# ଛାତ୍ରସାଥୀ : ବିଶ୍ୱବିଚିତ୍ରା (୪୮)

## ଓ

# କାମରାଜ ନାଦର


୨୩ଶ ବର୍ଷ • ୧୧ଶ ସଂଖ୍ୟା • ୧୯୮୪ • ନଭେମ୍ବର • ମୂଲ୍ୟ ଟ ୨-୦୦





Printed and Published by Sri Brundaban Das on behalf of M/s. J. Mohapatra & Co., Cuttack. Printed at G. P. Press, Kaligali, Cuttak-2

**CHHATRASATHI**
( General Knowledge Monthly )

Editor :
Sri Subas Sarangi

Mg. Editor :
Sri N. K. Mohapatra

Published by
J. MOHAPATRA & Co.
Cuttack-2 (Orissa)

•

ସଂପାଦକ :
ଶ୍ରୀ ସୁବାସ ଷଡଙ୍ଗୀ

ପରିଚାଳନା ସଂପାଦକ :
ଶ୍ରୀ ନବକିଶୋର ମହାପାତ୍ର

ପ୍ରକାଶକ
ଜେ. ମହାପାତ୍ର ଏଣ୍ଡ କୋ.
କଟକ-୨


ପଢ଼ାବହି ଦେଖିଲେ ମୋତେ
"ବିରକ୍ତି ଲାଗେ । ସେଥି ପାଇଁ
ମୁଁ ପରୀକ୍ଷାରେ ଉତ୍ତୀର୍ଣ୍ଣ
ହେବାର ଅନ୍ୟ ଉପାୟ
ନ ଦେଖି କପି କରିଥିଲି
ମାତ୍ର ପରୀକ୍ଷକ ତାହା
ଜାଣି ପାରିଲେ ।
କି ଔଷଧ ଖାଇଲେ
ମୋର "ବିରକ୍ତି" ଦୂର ହୋଇ
ପଢ଼ାପଢ଼ି ପ୍ରତି ଆଗ୍ରହ ସୃଷ୍ଟି
ହେବ ଡାକ୍ତର ବାବୁ ?
କିଛି ଔଷଧ ଦରକାର ନାହିଁ ।
ତୁମ ବାପାଙ୍କୁ କୁହ ସେ ତୁମକୁ
ପାଠ୍ୟ ପୁସ୍ତକ ନୁହେଁ, କିଛି
କିଛି ଶିଶୁ ଓ କିଶୋରମାନଙ୍କ
ପାଇଁ ପ୍ରକାଶ ପାଉଥିବା ବହି
ଓ ପତ୍ର ପତ୍ରିକା ଆଣି ଦେବେ ।
ତାକୁଓ ପଢ଼ିଲେ ତୁମର ପଢ଼ା ପ୍ରତି
ଆଗ୍ରହ ବଢ଼ିବ ଓ କିଛିଦିନ ପରେ
ତାହା ଅଭ୍ୟାସରେ ପରିଣତ ହେବ ।
ଥରେ ପଢ଼ିବାର ଅଭ୍ୟାସ
ସୃଷ୍ଟି ହେଲେ କେବଳ ପଢ଼ାବହି
ନୁହେଁ, ଯାହା କିଛି ପଢ଼ ଆଉ
"ବିରକ୍ତି" ଲାଗିବ ନାହିଁ ।
+ DOCTOR +

# କାମରାଜ ନାଦର

ଗଣତନ୍ତ୍ର ହେଉଛି ଆମ ଦେଶର ଶାସନ ପଦ୍ଧତି । ଗଣତନ୍ତ୍ର ର ମୂଳତତ୍ତ୍ୱ ହେଉଛି, ଜନସାଧାରଣ ସେମାନଙ୍କ ଶାସକଙ୍କୁ ଭୋଟ ଜରିଆରେ ବାଛିବା । ଗଣତାନ୍ତ୍ରିକ ବ୍ୟବସ୍ଥାରେ ସାଧାରଣ ନାଗରିକ ନିଜର ସୁଶାସନ ଲାଗି ପ୍ରତିନିଧି ବାଛିଲେ ପୂର୍ଣ୍ଣ ସାର୍ବଭୌମ ଅଧିକାର ପାଇଥିବା ସତ୍ତ୍ୱେ, ସେଥିରେ କେତେକ ତ୍ରୁଟି ମଧ୍ୟ ରହିଛି । ପ୍ରତ୍ୟେକ ନାଗରିକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଶାସନର ସର୍ବୋଚ୍ଚ ସ୍ଥାନକୁ ଭୋଟଦ୍ୱାରା ନିର୍ବାଚିତ ହୋଇ ଯିବାର ଅଧିକାର ରହିଛି ।

ଭାରତ ସ୍ୱାଧୀନ ହେବାପରେ ରାଜତନ୍ତ୍ର ବା ଏକଛତ୍ରବାଦ ଶାସନ ପଦ୍ଧତି ଗ୍ରହଣ ନକରି ଗଣତାନ୍ତ୍ରିକ ଆଦର୍ଶ ପଦ୍ଧତି ଗ୍ରହଣ କଲା ଏବଂ ତାହା ଫଳରେ ଦୁଇଜଣ ପ୍ରଧାନମନ୍ତ୍ରୀଙ୍କ ବିଦାୟ ପରେ ସୁଶୃଙ୍ଖଳିତ ଓ ଶାନ୍ତିପୂର୍ଣ୍ଣ ଉପାୟରେ ପରବର୍ତ୍ତୀ ପ୍ରଧାନମନ୍ତ୍ରୀ ନିର୍ବାଚିତ ହେଲେ, ତାହାଦ୍ୱାରା ଦେଶରେ କୌଣସି ବିଭ୍ରାଟ ବା ଅଶାନ୍ତି ସୃଷ୍ଟି ହେଲନାହିଁ । ସ୍ୱାଧୀନ ପରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ନେହେରୁ ୧୮ ବର୍ଷ କ୍ଷମତାରେ ଥିଲେ ଏବଂ ତାଙ୍କର ମୃତ୍ୟୁ ପରେ ଏହି ପଦବୀରେ ଆସୀନ ହେବାପାଇଁ ବହୁ ବ୍ୟକ୍ତି ଆଶାୟୀ ଥିଲେ ; ମାତ୍ର ସର୍ବସମ୍ମତିକ୍ରମେ ଲାଲବାହାଦୁର ଶାସ୍ତ୍ରୀ ଦ୍ୱିତୀୟ ପ୍ରଧାନମନ୍ତ୍ରୀ ଭାବେ ମନୋନୀତ ହେଲେ । ଶାସ୍ତ୍ରୀଙ୍କର ୧୮ ମାସ ପରେ ଆକସ୍ମିକ ମୃତ୍ୟୁ ହେବାରୁ ପୁନଶ୍ଚ ପ୍ରଧାନମନ୍ତ୍ରୀ ହେବାପାଇଁ ଦଳ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଦେଖାଦେଲା ଏବଂ ଶେଷରେ ଶ୍ରୀମତୀ ଇନ୍ଦିରା ଗାନ୍ଧି ପ୍ରଧାନମନ୍ତ୍ରୀଭାବେ ଦାୟିତ୍ୱ ଗ୍ରହଣକଲେ । ଯଦିଓ ନେତା ନିର୍ବାଚନ ପୂର୍ବରୁ ପ୍ରଧାନମନ୍ତ୍ରୀ ପଦପାଇଁ ଅନେକ ଭିଡାଓଟରା ଥିଲା, ତଥାପି ଶ୍ରୀମତୀ ଗାନ୍ଧିଙ୍କ ନେତୃତ୍ୱକୁ ସମସ୍ତେ ଗ୍ରହଣ କଲେ । ଏହାହିଁ ହେଉଛି ଗଣତାନ୍ତ୍ରିକ ପରମ୍ପରା ଏବଂ ଏହାକୁ ଦୃଢ଼ କରିବାପାଇଁ କେ. କାମରାଜ ନାଦରଙ୍କ ଅବଦାନ କିଛି କମ୍ ନୁହେଁ । ତାଙ୍କର ନିଜସ୍ୱ ବୁଦ୍ଧି, ବିଚାର ଫଳରେ ଦୁଇଜଣ ପ୍ରଧାନମନ୍ତ୍ରୀଙ୍କ ମୃତ୍ୟୁପରେ ଅନ୍ୟ ଜଣେ ପ୍ରଧାନମନ୍ତ୍ରୀଙ୍କୁ ବାଛିବାପାଇଁ ସାହାଯ୍ୟ କରିଥିଲା ।

କାମରାଜଙ୍କୁ ଦୁଇ ପ୍ରଧାନମନ୍ତ୍ରୀଙ୍କ ସ୍ରଷ୍ଟା ବୋଲି କୁହାଯାଏ । ଯଦି ସେ ନିଜେ ରହିଥାନ୍ତେ, ତା ହେଲେ ହୁଏତ ପ୍ରଧାନମନ୍ତ୍ରୀ ହୋଇ ପାରିଥାନ୍ତେ ; ମାତ୍ର ଏହା ତାଙ୍କର ଇଚ୍ଛା ନଥିଲା । ସେ କୌଣସି ପଦ ପଦବୀ ପ୍ରତି ଆଶାୟୀ ନହୋଇ ଭାରତର ଗଣତନ୍ତ୍ରକୁ ଦୃଢ଼କରିବା ପାଇଁ ରହୁଁଥିଲେ । ଦୁଇ ପ୍ରଧାନମନ୍ତ୍ରୀଙ୍କ ମୃତ୍ୟୁପରେ, ଯେପରିଭାବେ ସେ ଭାରତର ରାଜନୀତିର ସ୍ଥିରତା ରକ୍ଷା କରିବାପାଇଁ ସମର୍ଥ ହୋଇପାରିଥିଲେ, ତାହା ତାଙ୍କୁ ଦେଶର ଇତିହାସରେ ଚିରଦିନ ସ୍ମରଣୀୟ କରି ରଖିବ ।

କାମରାଜ ତାମିଲ ଭାଷା ବ୍ୟତୀତ ଆଉ କିଛି ଜାଣନ୍ତି ନାହିଁ । ଏପରିକି ଇଂରାଜୀ ମଧ୍ୟ । ସାଧାରଣ ଗରିବ ହରିଜନ ପରିବାରରେ ଜନ୍ମ ହୋଇ ଏବଂ କୌଣସି ପ୍ରକାରର ବିଶ୍ୱବିଦ୍ୟାଳୟ ଯୋଗ୍ୟତା ନଥାଇ, ସେ ଯେପରି ଭାରତର ରାଜନୀତିରେ ନିଜର ଦକ୍ଷତା ପ୍ରଦର୍ଶନ କରିଛନ୍ତି ତାହା ପ୍ରାୟ ଅନ୍ୟ କୌଣସି ନେତାମାନଙ୍କଠାରେ ପରିଦୃଷ୍ଟ ହୁଏ ନାହିଁ । ଯଦିଓ ସେ ଶାସକ କଂଗ୍ରେସରୁ ଅଲଗା ହୋଇଯାଇ ବିରୋଧୀ ସଂଗଠନ କଂଗ୍ରେସର ଅନ୍ୟତମ ନେତା ଥିଲେ, ତଥାପି ତାହା ତାଙ୍କୁ ଗଣତାନ୍ତ୍ରିକ ଆଦର୍ଶ ଓ ଦେଶାତ୍ମବୋଧରୁ ଚ୍ୟୁତ କରିପାରି ନଥିଲା । ତାଙ୍କର ଏ ପ୍ରକାର ନିଷ୍ଠାଯୋଗୁଁ ତାଙ୍କୁ ଭାରତରତ୍ନରେ ସମ୍ମାନିତ କରାଯାଇଥିଲା ।

ନେହେରୁ ବୃଦ୍ଧାବସ୍ଥାରେ ପହଂଚିବା ପରେ ଅନେକ ତାଙ୍କୁ ପ୍ରଶ୍ନ କରିଥିଲେ, ଆପଣଙ୍କ ପରେ ଭାରତର ପ୍ରଧାନମନ୍ତ୍ରୀ ହେବ କିଏ ? ଏହା ଥିଲା ନେହେରୁଙ୍କ ପାଇଁ ଏକ ଜଟିଳ ପ୍ରଶ୍ନ । କାରଣ ଗୋଟିଏ ଗଣତନ୍ତ୍ର ଦେଶରେ କେବେହେଲେ ବ୍ୟକ୍ତିବିଶେଷଙ୍କ ମନୋନୀତି ପ୍ରାର୍ଥୀ ଦେଶର ସର୍ବୋଚ୍ଚ ଶାସନକର୍ତ୍ତା ହୋଇପାରିବେ ନାହିଁ । କାରଣ ଗଣତନ୍ତ୍ର ଶାସନରେ ଲୋକମାନଙ୍କ ସିଦ୍ଧାନ୍ତ ହିଁ ପ୍ରକୃତ ସିଦ୍ଧାନ୍ତ । ତଥାପି ନେହେରୁ ଜାଣିଥିଲେ କଂଗ୍ରେସଦଳ ଆହୁରି ଅନେକ ବର୍ଷ ଧରି ଶାସନ କରିବ । କାରଣ ପ୍ରକୃତରେ କଂଗ୍ରେସ ଉପରେ ଲୋକମାନଙ୍କର ଭରସା ଥିଲା । ଏଣୁ ତାଙ୍କ ପରେ ପ୍ରଧାନମନ୍ତ୍ରୀ ଭାବେ କିଏ ଦାୟିତ୍ୱ ଗ୍ରହଣ କରିବ ସେ ସଂପର୍କରେ ଠିକ କରିବାପାଇଁ ନେହେରୁ ତତ୍କାଳୀନ ମାଡ୍ରାଜର ମୁଖ୍ୟମନ୍ତ୍ରୀ ଜେ କାମରାଜ ନାଦରଙ୍କୁ ଦାୟିତ୍ୱ ଦେଇଥିଲେ; କାରଣ ନେହେରୁ ଜାଣିଥିଲେ ଯେ, କାମରାଜ ଏଭଳି ଜଣେ ଲୋକ, ଯିଏକି କେବେହେଲେ କାହାଦ୍ୱାରା ବଶୀଭୂତ ହୋଇ ନଥାନ୍ତି । ସେ ସବୁବେଳେ ନିଜ ସିଦ୍ଧାନ୍ତରେ ଅଟଳ । ଯଦିଓ ସେ ମାଡ୍ରାଜ ପ୍ରଦେଶର ମୁଖ୍ୟମନ୍ତ୍ରୀ ଥିଲେ ତଥାପି ତାଙ୍କର ଅନେକ ବିଷୟରେ ନେହେରୁଙ୍କ ସହିତ ମତଭେଦ ରହିଥିଲା । ଫଳରେ ସେ କାମରାଜଙ୍କୁ ୧୯୬୩ ଜୁଲାଇ ମାସରେ ରାଜ୍ୟ ରାଜନୀତିରୁ ବାହାର କରିଆଣି ଭାରତୀୟ ରାଜନୈତିକ ରଙ୍ଗମଂଚରେ ପ୍ରତିଷ୍ଠା କରାଇଥିଲେ । କାରଣ ୧୯୬୨ ମସିହାରେ କମ୍ୟୁନିଷ୍ଟ ଚୀନ ଭାରତ ଆକ୍ରମଣ କରି ଏହାର କେତେକାଂଶକୁ ଅଧିକାର କରିନେଇଥିଲା । ଭାରତୀୟ ସୈନ୍ୟମାନେ ଏହାର ପ୍ରତିରୋଧ କରିବାକୁ ସକ୍ଷମ ହୋଇପାରିଲେ ନାହିଁ ।

ଏହି ପରାଜୟ ପାଇଁ ଦେଶର ସର୍ବତ୍ର ନେହେରୁ ଏବଂ ପ୍ରତିରକ୍ଷା ମନ୍ତ୍ରୀ ଭି. କେ. କୃଷ୍ଣ ମେନନଙ୍କୁ ସମାଲୋଚନା କରାଯାଉ ଥାଏ । ଏପରିକି କଂଗ୍ରେସ ପାର୍ଲିଆମେଣ୍ଟାରୀ ବୈଠକରେ ମଧ୍ୟ କଂଗ୍ରେସର ଏକ ବିଶିଷ୍ଟ ଗୋଷ୍ଠୀ ମେନନଙ୍କୁ ସିଧାସଳଖ ଭାବେ ସମାଲୋଚନା କରିବାକୁ ପଛେଇଲେ ନାହିଁ, ଫଳରେ ବାଧ୍ୟହୋଇ ନେହେରୁ କୃଷ୍ଣ-ମେନନଙ୍କୁ ନିଜ ମନ୍ତ୍ରୀମଣ୍ଡଳରୁ ବାଦଦେଲେ, କିନ୍ତୁ ମେନନଙ୍କୁ ବାଦଦେଇ ସେ

ଅଧିକ ମ୍ରିୟମାଣ ହୋଇ ଉଠିଲେ । ତାଙ୍କର ହୃଦ୍‌ବୋଧ ହେଲା ଯେ, କଂଗ୍ରେସ ମଧ୍ୟରେ ଏକ ବିରୋଧୀ ଗୋଷ୍ଠୀ ମୁଣ୍ଡ ଟେକିଛନ୍ତି ।

୧୯୬୩ ଜୁଲାଇ ମାସରେ ନେହେରୁ ହାଇଦ୍ରାବାଦ ଷ୍ଟେସନ ପାଇଥିବା ସମୟରେ ତାଙ୍କର କାମରାଜଙ୍କ ସହିତ ସାକ୍ଷାତ ହେଲା ଏବଂ ଉଭୟଙ୍କ ମଧ୍ୟରେ କଂଗ୍ରେସ ମଧ୍ୟରେ ଥିବା ମତଭେଦ ସମ୍ପର୍କରେ ଆଲୋଚନା ହେଲା । ଫଳରେ ସାଙ୍ଗଠନିକ କାର୍ଯ୍ୟରେ ସହଯୋଗ ପାଇଁ ନେହେରୁ କାମରାଜଙ୍କୁ ଜାତୀୟ ରାଜନୀତିକୁ ନେଇଆସିଲେ ।

କାମରାଜ ପ୍ରଥମେ ଦଳର ସଙ୍ଗଠନକୁ ମଜବୁତ କରିବା ପାଇଁ ଏକ ଯୋଜନା ପ୍ରଣୟନ କଲେ । ସେ ପ୍ରସ୍ତାବ ଦେଲେ ଯେ, କେନ୍ଦ୍ର ମନ୍ତ୍ରୀମଣ୍ଡଳ ଓ କଂଗ୍ରେସ ଦଳର ପୁନର୍ଗଠନ ଲାଗି ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ସୁଯୋଗ ଦେବାପାଇଁ କେନ୍ଦ୍ରର ସବୁ ମନ୍ତ୍ରୀ ଏବଂ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଇସ୍ତଫା ଦେଇଦେବା ଉଚିତ୍ । ଇସ୍ତଫାଦେଇ ସେମାନେ ଦଳୀୟ ସଙ୍ଗଠନ କାମରେ ପୂର୍ଣ୍ଣସମୟ ଦେବା ଉଚିତ । ଏହାପରେ ପ୍ରଧାନମନ୍ତ୍ରୀ ନୂତନ ସଭ୍ୟଙ୍କୁ ନେଇ ତାଙ୍କର ମନ୍ତ୍ରୀମଣ୍ଡଳ ଗଠନ କରିବେ ଓ ରାଜ୍ୟମାନଙ୍କରେ ନୂଆ ମୁଖ୍ୟମନ୍ତ୍ରୀ ନିଯୁକ୍ତ କରିବେ । ଯେଉଁମାନେ କି ସଙ୍ଗଠନକୁ ଦୃଢ଼କରିବାରେ ସାହାଯ୍ୟ କରି-ପାରିବେ ।

କଂଗ୍ରେସ ଦଳ ବୈଠକରେ କାମରାଜଙ୍କ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା ଏବଂ ତାହା "କାମରାଜ ଯୋଜନା" ରୂପେ ବିଦିତ ହେଲା । ମନ୍ତ୍ରୀମଣ୍ଡଳ ଏବଂ ଦଳୀୟ ସଙ୍ଗଠନର ପୁନର୍ଗଠନ ଲାଗି ନେହେରୁଙ୍କୁ ପୂର୍ଣ୍ଣ ଦାୟିତ୍ୱ ଦିଆଗଲା । ଏହି ଯୋଜନାନୁଯାୟୀ କେନ୍ଦ୍ରର ସମସ୍ତ ମନ୍ତ୍ରୀ ଏବଂ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଇସ୍ତଫା ଦେଲେ ।

ଏହାପରେ କଂଗ୍ରେସ ସାଙ୍ଗଠନିକ କାର୍ଯ୍ୟ କିପରି କରଯାଇ ପାରିବ, ସେ ନେଇ ଏକ କମିଟି ଗଠନ କରଗଲା । ଏଥିରେ କେ. କାମରାଜ, ଅତୁଲ୍ୟ ଘୋଷ, ସଂଜୀବ ରେଡ୍ଡି, ଏସ. ନିଜ ଲିଙ୍ଗପା, ଶ୍ରୀନିବାସ ମାଲ୍ୟା ପ୍ରମୁଖ ସଭ୍ୟ ରହିଲେ । ସେମାନେ କଂଗ୍ରେସ ସଭାପତି କିଏ ହେବ, ସେଥିନେଇ ବିଭିନ୍ନ ଆଲୋଚନା କଲେ । ବହୁ ଆଲୋଚନା ପରେ ସେମାନେ ଠିକ୍ କଲେ ଯେ, ଲାଲବାହାଦୁର ଶାସ୍ତ୍ରୀଙ୍କୁ କଂଗ୍ରେସ ସଭାପତି ପାଇଁ ଅନୁରୋଧ କରାଯିବ, ଆଉ ଯଦି ଶାସ୍ତ୍ରୀ ରାଜି ନ ହୁଅନ୍ତି ତେବେ କାମରାଜଙ୍କୁ କଂଗ୍ରେସର ସଭାପତି ହେବାପାଇଁ ଅନୁରୋଧ କରାଯିବ ।

କାରଣ ସେମାନଙ୍କର ସନ୍ଦେହ ଥିଲା ଯେ, ହୁଏତ ଲାଲବାହାଦୁର ଶାସ୍ତ୍ରୀ ରାଜି-ହୋଇ ନ ପାରନ୍ତି, କାରଣ ଶାସ୍ତ୍ରୀ ଥିଲେ ନେହେରୁଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଅନୁଗତ । ଏଣୁ

ସେ କେବେହେଲେ ନେହେରୁଙ୍କ ସହ ପରାମର୍ଶ ନକରି, କଂଗ୍ରେସର ସଭାପତି ପାଇଁ ଛିଡ଼ାହୋଇ ନ ପାରନ୍ତି । ତେବେ ଯଦି ଶାସ୍ତ୍ରୀ ରାଜି ନ ହୁଅନ୍ତି, ତେବେ ସଭାପତି ପାଇଁ କାମରାଜଙ୍କୁ ମନୋନୀତ କରାଯିବ ।

ସେମାନେ ଯେତେବେଳେ ନେହେରୁଙ୍କ ପାଖକୁ ଯାଇ ଶାସ୍ତ୍ରୀଙ୍କୁ କଂଗ୍ରେସର ସଭାପତି ହେବା ପାଇଁ ପ୍ରସ୍ତାବ ଦେଲେ, ସେତେବେଳେ ନେହେରୁ ଓଲଟି କାମରାଜଙ୍କୁ ପଚାରିଲେ, ଆପଣ ନିଜେ ଏହି ଦାୟିତ୍ୱ ଗ୍ରହଣ କରୁ ନାହାନ୍ତି ? ଆପଣ ତ କିଛିଦିନ ପୂର୍ବେ କହିଥିଲେ ଯେ, କ୍ଷମତାରେ ଥିବା କେତେଜଣ ତୁଙ୍ଗ ନେତା ଇସ୍ତଫା ଦେଇ କଂଗ୍ରେସ ସଙ୍ଗଠନକୁ ଦୃଢ଼ କରିବାଲାଗି କାର୍ଯ୍ୟ କରିବା ଉଚିତ ।

କାମରାଜ ଏହି ପ୍ରସ୍ତାବରେ ମନାକରି ପାରିଲେ ନାହିଁ । ଏଣୁ ସେ ବାଧ୍ୟହୋଇ କଂଗ୍ରେସର ସଙ୍ଗଠନ କାର୍ଯ୍ୟ ପରିଚାଳିତ କରିବା ପାଇଁ ସଭାପତି ହେଲେ ।

କାମରାଜ କଂଗ୍ରେସର ସଭାପତି ହେବାପରେ, ନେହେରୁଙ୍କୁ ଭେଟି ଶାସ୍ତ୍ରୀଙ୍କୁ ମନ୍ତ୍ରୀମଣ୍ଡଳରେ ଗ୍ରହଣ କରିବାପାଇଁ ଅନୁରୋଧ ଜଣାଇ ଥିଲେ । ଫଳରେ ନେହେରୁ ଶାସ୍ତ୍ରୀଙ୍କୁ ତାଙ୍କ ମନ୍ତ୍ରୀମଣ୍ଡଳରେ ଜଣେ ବିଭାଗ ବିହୀନ ମନ୍ତ୍ରୀଭାବେ ଗ୍ରହଣ କଲେ ।

ଏହି ସମୟରେ ନେହେରୁଙ୍କର ମୃତ୍ୟୁ ଘଟିଲା । ସେ ସେତେବେଳକୁ ସିଣ୍ଡିକେଟର ଦୁଇଜଣ ବିଶିଷ୍ଟ ନେତା କାମରାଜ ଓ ଅତୁଲ୍ୟ ଘୋଷ ଦିଲ୍ଲୀରେ ନଥାନ୍ତି । କାମରାଜ ଏକ ସ୍ୱତନ୍ତ୍ର ବିମାନରେ ମାନ୍ଦ୍ରାଜରୁ ଦିଲ୍ଲୀ ଆସିଲେ । ଅତୁଲ୍ୟ ଘୋଷ ମଧ୍ୟ କଲିକତାଠାରୁ ଆସିଲେ । ତ୍ରିମୂର୍ତ୍ତି ଭବନରେ ନେହେରୁଙ୍କ ଶବ ଥିବା ଅବସ୍ଥାରେ କଂଗ୍ରେସ ନେତାମାନେ ତାଙ୍କର ଉତ୍ତରାଧିକାରୀ ପ୍ରଶ୍ନ ବିଚାର କଲେ । ସେଠାରେ ଜଣେ ଶାସ୍ତ୍ରୀଙ୍କୁ କହିଲେ, "ଆପଣ ମନୋନୀତ ହେବାର ସମ୍ଭାବନା ଖୁବ ବେଶୀ, ନମ୍ରତାର ସହିତ ଶାସ୍ତ୍ରୀ ତାଙ୍କୁ କହିଲେ, ହଁ ମୁଁ ସେ କଥା ଜାଣେ, କିନ୍ତୁ ବୁଲଡୋଜିଲାଲ ନନ୍ଦା ସେହି ଦାୟିତ୍ୱ ବର୍ତ୍ତମାନ ହାତକୁ ନେବା ଉଚିତ ।

ରାଷ୍ଟ୍ରପତି ଡ଼ଃ ରାଧାକ୍ରିଷ୍ଣନ୍‌ଙ୍କ ପରାମର୍ଶକ୍ରମେ ଅସ୍ଥାୟୀ ପ୍ରଧାନମନ୍ତ୍ରୀ ଭାବେ ନନ୍ଦା ନିଯୁକ୍ତ ହୋଇ ଶପଥ ଗ୍ରହଣ କଲେ ।

ଏହାପରେ କଂଗ୍ରେସ ଦଳ ମଧ୍ୟରେ 'ପ୍ରଧାନମନ୍ତ୍ରୀତ୍ୱ' ନେଇ ଏକ ସମସ୍ୟା ସୃଷ୍ଟି-ହୋଇଗଲା । ସେତେବେଳେ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେବାପାଇଁ ଲାଗିଥାନ୍ତି । ହେଲେ ସୁପ୍ରିମକୋର୍ଟ ବା କାମରାଜ ଏହା କେବେହେଲେ ଚାହୁଁ ନଥିଲେ; ବରଂ ଶାସ୍ତ୍ରୀ ଚାହୁଁଥିଲେ ଯଦି ନେହେରୁଙ୍କ କନ୍ୟା ଇନ୍ଦିରା ଗାନ୍ଧିଙ୍କୁ ନେହେରୁଙ୍କ ମନୋନୀତ

କରାଯାଏ, ତେବେ ସେ ଏହାକୁ ସମର୍ଥନ କରିବେ । ମାତ୍ର ଯଦି ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେବାପାଇଁ ଚାହାଁନ୍ତି, ତେବେ ସେ ନିଶ୍ଚିତ ଭାବେ ପ୍ରତିଦ୍ୱନ୍ଦ୍ୱିତା କରିବେ । ଏଣେ ମୋରାରଜୀ ଦେଶାଇ ମଧ୍ୟ କଂଗ୍ରେସ ପାର୍ଲିଆମେଣ୍ଟ ଦଳର ନେତା ହେବା ପାଇଁ ପ୍ରାର୍ଥୀ ହେବେ ବୋଲି ଘୋଷଣା କଲେ ।

ଏଭଳି ଅବସ୍ଥାରେ ଅନ୍ତରାଳରେ ପଡ଼ଗଲେ କାମରାଜ । ତେବେ ସେ ନିଜର ବୁଦ୍ଧି-ବଳରେ ଏକ ସର୍ବସମ୍ମତ ପ୍ରାର୍ଥୀ ଦେବାପାଇଁ ଯୁକ୍ତି ବାଢ଼ିଲେ, କାରଣ ଏହାଦ୍ୱାରା ଦଳର ଏକତା ଆହୁରି ଅଧିକ ମଜବୁତ୍ ହେବ । ତାଙ୍କର ଏହି ପ୍ରସ୍ତାବରେ ବହୁ କଷ୍ଟରେ ଦେଶାଇ ରାଜିହେଲେ । ଫଳରେ କାମରାଜ ପ୍ରତି ସଦସ୍ୟଙ୍କୁ ଭେଟି କିଏ ପ୍ରଧାନମନ୍ତ୍ରୀ ହେବେ, ତାହା ଜାଣିବାକୁ ଚାହିଁଲେ । ଶେଷରେ ସେ ସର୍ବସମ୍ମତ ଭାବେ ଲାଲବାହାଦୂର ଶାସ୍ତ୍ରୀଙ୍କୁ ମନୋନୀତ କରିଥିଲେ ।

କାମରାଜଙ୍କ ବୁଦ୍ଧି ଓ କୌଶଳ ଯୋଗୁଁ ଏକ ବିରାଟ ରାଜନୈତିକ ସଙ୍କଟ ଏଡ଼ାଇ ଦିଆଯାଇ ପାରିଲା ଏବଂ ଶାସ୍ତ୍ରୀ ୧୯୬୪ରେ ସ୍ୱାଧୀନ ଭାରତର ଦ୍ୱିତୀୟ ପ୍ରଧାନ-ମନ୍ତ୍ରୀଭାବେ ଦାୟିତ୍ୱ ଗ୍ରହଣ କଲେ ।

ନେହେରୁଙ୍କ ମୃତ୍ୟୁପରେ ଲାଲବାହାଦୂର ଶାସ୍ତ୍ରୀଙ୍କ ବିନା ପ୍ରତିଦ୍ୱନ୍ଦ୍ୱିତାରେ ଓ ଶୃଙ୍ଖଳାର ସହିତ ପ୍ରଧାନମନ୍ତ୍ରୀ ହୋଇ ପାରିଥିବାରୁ ତାଙ୍କର ଖ୍ୟାତି ଆହୁରି ଅଧିକ ବଢ଼ି-ଯାଇଥିଲା ।

ମାତ୍ର ଏହି ଘଟଣାର ମାତ୍ର ଅଠର ମାସ ପରେ ପୁଣି ତାଙ୍କୁ ଏକ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଲା । ଶାସ୍ତ୍ରୀଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ ପାକିସ୍ତାନ ଭାରତ ଆକ୍ରମଣ କଲା । ମାତ୍ର ଭାରତର ଶକ୍ତି ନିକଟରେ ସେ ବେଶୀ ସମୟ ତିଷ୍ଠିରହି ପାରିଲା ନାହିଁ । ଫଳରେ ବୃହତ୍ ଶକ୍ତିମାନଙ୍କ ଚାପରେ ଭରତ ସନ୍ଧି କରିବା ପାଇଁ ରାଜିହେଲା । ସୋଭିଏତ ୟୁନିୟନର ତାସକେଣ୍ଟଠାରେ ଭାରତର ପ୍ରଧାନମନ୍ତ୍ରୀ ଶାସ୍ତ୍ରୀ ଓ ପାକିସ୍ତାନର ରାଷ୍ଟ୍ରପତି ଅୟୁବ ଖାଁଙ୍କ ମଧ୍ୟରେ କଥାବାର୍ତ୍ତା ଆରମ୍ଭ ହେଲା । ସୋଭିଏତର ପ୍ରଧାନମନ୍ତ୍ରୀ କୋସିଗିନ ଏଥିରେ ସହାୟତା କଲେ ମାତ୍ର ଭାରତ ଓ ପାକିସ୍ତାନ ମଧ୍ୟରେ ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେବାର ଅଳ୍ପ କେତେ ଘଣ୍ଟା ପରେ ସେଠାରେ ଶାସ୍ତ୍ରୀଜୀଙ୍କର ମୃତ୍ୟୁ ଘଟିଲା । ହଠାତ ଶାସ୍ତ୍ରୀଙ୍କର ଏପରି ମୃତ୍ୟୁରେ ନେତୃବର୍ଗ ସ୍ତମ୍ଭିତ ହୋଇଗଲେ । କ ମରାଜ ଜାଣିପାରିଲେ ଯେ, ପୁଣି ମଧ୍ୟ ଏଥର ପ୍ରଧାନମନ୍ତ୍ରୀ ନେଇ ଏକ ସଙ୍କଟ ଦେଖା ଦେବ ।

ଶାସ୍ତ୍ରୀଙ୍କ ଶବ ଏକ ସ୍ୱତନ୍ତ୍ର ବିମାନରେ ତାସକେଣ୍ଟ ଅସି ଦିଲ୍ଲୀରେ ପହଞ୍ଚିଲା । ସବୁ ଲୋକମାନେ ସେଠାରେ ଉପସ୍ଥିତ ଥିଲେ । ଏହି ସମୟରେ ଶ୍ରୀମତୀ ଇନ୍ଦିରା ଗାନ୍ଧି

ପ୍ରଧାନମନ୍ତ୍ରୀ ହେବେବୋଲି ସ୍ପଷ୍ଟ ହୋଇଗଲା । ଫଳରେ ଏଥର ପ୍ରଧାନମନ୍ତ୍ରୀପାଇଁ ନିଶ୍ଚିତ ଯେ ପ୍ରତିଦ୍ୱନ୍ଦ୍ୱିତା ହେବ ଏହା କଂଗ୍ରେସର ନେତୃବର୍ଗ ଜାଣିପାରିଲେ । ଏ ସଂକ୍ରାନ୍ତରେ ମୋରାରଜୀ ଦେଶାଇ ଓ ଇନ୍ଦିରା ଗାନ୍ଧୀଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେବ ବୋଲି ପ୍ରକାଶିତ ହେଲା । ଅସ୍ଥାୟୀ ପ୍ରଧାନମନ୍ତ୍ରୀ ଗୁଲଜାରିଲାଲ ନନ୍ଦା ପ୍ରତିରକ୍ଷା ମନ୍ତ୍ରୀ ଓ୍ୱାଇ. ବି ଚୌହାନ ଓ ଜଗଜୀବନ ରାମ ସେଇ ପଦପାଇଁ ପ୍ରତିଦ୍ୱନ୍ଦ୍ୱିତା କରିପାରନ୍ତି ବୋଲି ମଧ୍ୟ ଶୁଣାଯାଉଥାଏ ।

କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକ ବସି ଶାସ୍ତ୍ରୀଙ୍କ ବିୟୋଗରେ ଶୋକ ପ୍ରକାଶକରି ଏକ ପ୍ରସ୍ତାବ ଗ୍ରହଣ କରିବା ପରେ ପରବର୍ତ୍ତୀ ନେତା ନିର୍ବାଚନ ପନ୍ଥା ସମ୍ପର୍କରେ ଆଲୋଚନା କରାଗଲା । ବୈଠକରେ ପ୍ରସ୍ତାବ କରାଗଲା ଯେ, ପ୍ରତିଦ୍ୱନ୍ଦ୍ୱିତାରେ ବିଜୟୀ ପ୍ରାର୍ଥୀ ସମୁଦାୟ ଭୋଟର ଅର୍ଦ୍ଧେକରୁ ଅଧିକ ପାଇବା ଆବଶ୍ୟକ । ଯଦି ପ୍ରଥମ ଗଣତିରେ ତାହା ସମ୍ଭବ ନ ହୁଏ, ଦ୍ୱିତୀୟ ବା ଅଧିକ ଥର ଭୋଟ ଗ୍ରହଣ କରାଯିବ । ଯେପର୍ଯ୍ୟନ୍ତ ଜଣେ ପ୍ରାର୍ଥୀ ସର୍ବାଧିକ ଭୋଟ ନ ପାଉଛନ୍ତି, ସେ ପର୍ଯ୍ୟନ୍ତ ଭୋଟ ଗ୍ରହଣ କରାଯାଉଥିବ । ଏସ. କେ. ପାଟିଲ୍ ପ୍ରସ୍ତାବ କଲେ, ପ୍ରତ୍ୟେକ ସଭ୍ୟଙ୍କୁ ଭୋଟ କାଗଜରେ ତାଙ୍କ ମନୋନୀତ ପ୍ରାର୍ଥୀଙ୍କ ନାମ ସ୍ୱ-ହସ୍ତରେ ଲେଖିବାକୁ କୁହାଯିବ । ଅଳ୍ପ ଭୋଟ ପାଉଥିବା ପ୍ରାର୍ଥୀଙ୍କୁ କ୍ରମେ ବାଦ ଦିଆଯିବ ଏବଂ ଜଣେ ପ୍ରାର୍ଥୀ ସର୍ବାଧିକ ଭୋଟ ପାଇବା ପରେ ଦଳ ଦ୍ୱାରା ସେ ନେତାରୂପେ ନିର୍ବାଚିତ ହେବେ ।

ସର୍ବସମ୍ମତ ନେତା ନିର୍ବାଚନ ହେବା ଉଚିତ ବୋଲି କଂଗ୍ରେସ କାର୍ଯ୍ୟକାରୀ କମିଟି ଇଚ୍ଛା କରୁଥାନ୍ତି । କିନ୍ତୁ ଦେଶାଇ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଦୃଢ଼ସଂକଳ୍ପ ହୋଇଥିବା ଦୃଷ୍ଟିରୁ ଏହା ସମ୍ଭବପର ହୋଇପାରୁ ନଥାଏ ।

ଏଣେ ଅସ୍ଥାୟୀ ପ୍ରଧାନମନ୍ତ୍ରୀ ଗୁଲଜାରୀଲାଲ ନନ୍ଦା ମଧ୍ୟ ପ୍ରଧାନମନ୍ତ୍ରୀ ପଦପାଇଁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଠିକ୍ କଲେ । ହେଲେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପ୍ରାର୍ଥୀ ହେବାକଥା ପ୍ରାୟ ବାହାରେ ପ୍ରକାଶ ପାଇ ନଥିଲା । କାରଣ ତାଙ୍କୁ ସମ୍ପୂର୍ଣ୍ଣ ନୀରବ ରହିବାକୁ କାମରାଜ ପରାମର୍ଶ ଦେଇଥାନ୍ତି ।

ଏହି ସମୟରେ ନନ୍ଦା ଜାଣିପାରିଲେ ଯେ, ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମଧ୍ୟ ପ୍ରଧାନମନ୍ତ୍ରୀ ପଦ ପାଇଁ ପ୍ରାର୍ଥୀ ହେଉଛନ୍ତି, ଏଣୁ ସେ ଏହି ନିର୍ବାଚନରୁ ଓହରି ଯିବାକୁ ଠିକ୍ କଲେ । କାରଣ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରାର୍ଥୀ ନ ହୋଇଥିଲେ, ସେ ପ୍ରାର୍ଥୀ ହୋଇଥାନ୍ତେ; ଏଣୁ ସେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କୁ ସାହାଯ୍ୟ କରିବାକୁ ଲାଗିଲେ ।

ଅନ୍ୟପକ୍ଷରେ ଦକ୍ଷିଣ ଭାରତର ଏମ: ପି: ମାନେ ମଧ୍ୟ ଚାହୁଁ ନଥିଲେ ଯେ, ଦେଶାଇ ପ୍ରଧାନମନ୍ତ୍ରୀ ହୁଅନ୍ତୁ । କାରଣ ହିନ୍ଦୀକୁ ରାଷ୍ଟ୍ରଭାଷା କରିବା ପାଇଁ ଦେଶାଇ ଜୋର ଦେଇଥିଲେ ତଥାପି ସେ ଅର୍ଥମନ୍ତ୍ରୀ ଥିବାବେଳେ, ଏପରି କେତେକ କାର୍ଯ୍ୟ କରିଥିଲେ, ଯେଉଁଥିରେ ଭାରତୀୟ ଅର୍ଥନୀତିରେ ଅଡୁଆ ଆସିଥିଲା । ସିଣ୍ଡିକେଟର ସଭ୍ୟମାନେ ଶେଷ ଚେଷ୍ଟାରେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ମାତ୍ର ଦେଶାଇ ତାଙ୍କ କଥାରେ ଅଟଳ ରହିଲେ ।

ଶେଷରେ ପ୍ରଧାନମନ୍ତ୍ରୀ ପଦ ପାଇଁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ ମୋରାରଜୀ ଦେଶାଇଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେଲା । ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀ ଡ଼: ପି: ମିଶ୍ର ସର୍ବପ୍ରଥମେ ଶ୍ରୀମତୀ ଗାନ୍ଧୀଙ୍କୁ ସମର୍ଥନ କଲେ । କାମରାଜଙ୍କ ପରାମର୍ଶ ଅନୁସାରେ ନୂଆଦିଲ୍ଲୀ ଚାଣକ୍ୟ-ପୁରୀଠାରେ ମଧ୍ୟପ୍ରଦେଶ ଭବନରେ ସେ ଅନ୍ୟାନ୍ୟ ମୁଖ୍ୟମନ୍ତ୍ରୀମାନଙ୍କର ଏକ ଆଲୋଚନା ବୈଠକ ଆହ୍ୱାନ କଲେ ଏବଂ ସେଥିରେ ମହାରାଷ୍ଟ୍ରର ଭି: ପି: ନାୟକ, ମାନ୍ଦ୍ରାଜର ଭକ୍ତବତ୍ସଳ, ଅନ୍ଧ୍ରପ୍ରଦେଶର ବ୍ରହ୍ମାନନ୍ଦ ରେଡ୍ଡୀ, ଓଡ଼ିଶାର ସଦାଶିବ ତ୍ରିପାଠୀ, ମହୀଶୂରର ନିଜଲିଙ୍ଗପ୍ପା ଏବଂ ଜାମ୍ମୁ, କାଶ୍ମୀରର ସାଦିକ ଅଲି ଯୋଗ ଦେଇଥିଲେ । ଏମାନେ ସମସ୍ତେ ଇନ୍ଦିରା ଗାନ୍ଧୀଙ୍କୁ ଖୋଲାଖୋଲି ସମର୍ଥନ ଜଣାଇଲେ । ବିହାରର ମୁଖ୍ୟମନ୍ତ୍ରୀ ସହାୟ ବୈଠକରେ ଯୋଗଦେଇଥିଲେ ; ମାତ୍ର ସେ କାହାକୁ ସମର୍ଥନ କରନ୍ତି ସେ କଥା ପ୍ରକାଶ କଲେନାହିଁ । ପଞ୍ଜାବ ମୁଖ୍ୟମନ୍ତ୍ରୀ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କୁ ସମର୍ଥନ କଲେ । ମୁଖ୍ୟମନ୍ତ୍ରୀମାନେ ଯଦିଓ ପ୍ରଧାନମନ୍ତ୍ରୀ ନିର୍ବାଚନରେ ଭୋଟ ଦେଇ ପାରିବେ ନାହିଁ, ତଥାପି ସେମାନେ ନିଜ ନିଜ ରାଜ୍ୟର କଂଗ୍ରେସ ପାର୍ଲିଆମେଣ୍ଟ ସଭ୍ୟମାନଙ୍କୁ ପ୍ରଭାବିତ କରିପାରିବେ, ଏହା ସେ ଭଲଭାବରେ ଜାଣିଥିଲେ ।

ମୁଖ୍ୟମନ୍ତ୍ରୀମାନେ ଶ୍ରୀମତୀ ଗାନ୍ଧୀଙ୍କୁ ସମର୍ଥନ ଜଣାଇ ବିବୃତି ଦେବାପରେ ଦେଶାଇ ଭୀଷଣ ରାଗିଗଲେ ଏବଂ ଏକ ବିବୃତିରେ କହିଲେ, ମୁଖ୍ୟମନ୍ତ୍ରୀମାନଙ୍କ ଜରିଆରେ ପାର୍ଲିଆମେଣ୍ଟ ମନ୍ତ୍ରୀମାନଙ୍କ ଉପରେ ଚାପ ଦିଆଯାଉଛି ।

ପ୍ରକୃତରେ ଅନେକ ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀମତୀ ଗାନ୍ଧୀଙ୍କୁ ଖୋଲାଖୋଲି ଭାବେ ସମର୍ଥନ ଜଣାଇଲେ । ମୁଖ୍ୟମନ୍ତ୍ରୀମାନେ ସେମାନଙ୍କ ଉପରେ ଯେ ପ୍ରଭାବ ପକାଇଥିଲେ, ଏହା ସ୍ପଷ୍ଟ ହୋଇଗଲା । ତଥାପି ଦେଶାଇ ପ୍ରତ୍ୟେକ ସଭ୍ୟମାନଙ୍କ ପାଖକୁ ଏକ ଚିଠି ପଠାଇଲେ । ଅନ୍ୟ ପକ୍ଷରେ ପ୍ରାର୍ଥୀ ହେବାକୁ ଥିବା ଚୌହାନ ମଧ୍ୟ ଏପରି ଖଣ୍ଡମୁହଁରେ ପ୍ରାର୍ଥୀ ନହୋଇ ଶେଷରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ କଲେ ।

ଭଗଭୀତନଙ୍କ ନାମ ପ୍ରଥମ ଅବସ୍ଥାରେ ଶୁଣାଯାଉ ଥିଲା, ହେଲେ ସେ ପ୍ରାର୍ଥୀ ହେଲେ ନାହିଁ, କିନ୍ତୁ ସେ ଦେଶାଇଙ୍କୁ ସମର୍ଥନ କଲେ । ମାତ୍ର ଶେଷରେ ସେ ଯେତେବେଳେ ଜାଣିପାରିଲେ ଯେ, ଦେଶାଇଙ୍କ ପରାଜୟ ସୁନିଶ୍ଚିତ ସେତେବେଳେ ସେ ଶ୍ରୀମତୀ ଗାନ୍ଧିଙ୍କୁ ସମର୍ଥନ କଲେ ।

ଏହା ସତ୍ତ୍ୱେ ମଧ୍ୟ ବହୁ ପ୍ରବୀଣ ମୁଖ୍ୟ ନେତାମାନେ ସର୍ବସମ୍ମତି ପ୍ରାର୍ଥୀ ହେବା ପାଇଁ କାମରାଜଙ୍କୁ ଦାୟିତ୍ୱ ଦେଲେ । ଫଳରେ ଶେଷ ମୁହୂର୍ତ୍ତରେ ପୁଣି ଥରେ କାମରାଜ ଉଦ୍ୟମ କଲେ । ସେ ପୁଣି ଥରେ ଦେଶାଇଙ୍କୁ ଭେଟି ଦଳର ଏକତା ଦୃଷ୍ଟିରୁ ତାଙ୍କୁ ପ୍ରତିଦ୍ୱନ୍ଦତାରୁ ଓହରି ଯିବାକୁ ଅନୁରୋଧ କଲେ, କିନ୍ତୁ ଦେଶାଇ ଅତ୍ୟନ୍ତ କ୍ଷୋଭର ସହିତ କହିଲେ, ମୁଁ କି ଅପରାଧ କରିଛି ? ଦଳର ଏକତା ଅର୍ଥ କ'ଣ ମୁଁ ପ୍ରତିଦ୍ୱନ୍ଦତାରୁ ଓହରିଯିବା ।

ମାତ୍ର ଦେଶାଇ ରାଜି ନ ହେବାରୁ ଶେଷରେ ନିର୍ବାଚନ ହେଲା ଏବଂ ଶ୍ରୀମତୀ ଇନ୍ଦିରା ଗାନ୍ଧି ୩୫୫ ଭୋଟ ପାଇଥିବାବେଳେ ମୋରାରଜୀ ଦେଶାଇ ପାଇଲେ ୧୬୯ ଭୋଟ । ଶେଷରେ ଦେଶାଇ ପରାଜୟ ସ୍ୱୀକାର କଲେ । ନିଜର ପରାଜୟ ପାଇଁ ସେ କାମରାଜଙ୍କୁ ହିଁ ଦାୟୀ କରିଥିଲେ । ଏହି ଘଟଣା ପରେ ଦେଶାଇ କାମରାଜଙ୍କ ସହିତ ଅଧିକ ଘନିଷ୍ଠ ହେବାକୁ ଲାଗିଲେ ।

ଲାଲବାହାଦୁର ଶାସ୍ତ୍ରୀଙ୍କ ମୃତ୍ୟୁ ପରେ କାମରାଜ ଶ୍ରୀମତୀ ଗାନ୍ଧିଙ୍କୁ ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ କରାଇବା ପରେ ପୁଣି ତାଙ୍କର ରାଜନୈତିକ ପ୍ରଭାବ ବୃଦ୍ଧିପାଇବାକୁ ଲାଗିଲା, ମାତ୍ର କିଛିଦିନ ପରେ ଶ୍ରୀମତୀ ଗାନ୍ଧିଙ୍କ ସହ ତାଙ୍କର ମନାନ୍ତର ଘଟିଲା, କାରଣ ସେ ସମୟରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧି କୌଣସି ଏକ ସିଦ୍ଧାନ୍ତ ଗ୍ରହଣ କରିବା ପୂର୍ବରୁ କେବେହେଲେ କାମରାଜଙ୍କ ସହିତ ପରାମର୍ଶ କରୁ ନଥିଲେ । ଅବଶ୍ୟ ଏହି ପ୍ରଥା ଲାଲବାହାଦୁର ଶାସ୍ତ୍ରୀଙ୍କ ସମୟରୁ ଚଳି ଆସିଥିଲା । ଏଣୁ କାମରାଜ ଏବଂ ଶାସ୍ତ୍ରୀଙ୍କ ମଧ୍ୟରେ ଶେଷ ପର୍ଯ୍ୟାୟରେ ମନାନ୍ତର ଘଟିଥିଲା । ଶ୍ରୀମତୀ ଗାନ୍ଧି ସେହି ନୀତି ଅନୁସରଣ କରିବାକୁ ଲାଗିଲେ । ଫଳରେ କାମରାଜ ଏବଂ ଶ୍ରୀମତୀ ଗାନ୍ଧିଙ୍କ ମଧ୍ୟରେ ମନାନ୍ତର ଘଟିବାକୁ ଲାଗିଲା । ଶେଷରେ ୧୯୬୭ ନିର୍ବାଚନରେ କଂଗ୍ରେସ ସବୁ ସ୍ଥାନରେ ପରାଜୟ କଲା ଯଥା –ଓଡ଼ିଶା, ପଶ୍ଚିମ ବଙ୍ଗ, କେରଳ, ପଞ୍ଜାବ, ମାଡ୍ରାଜ ଏବଂ ବିହାରରେ କଂଗ୍ରେସ ଦଳ ପରାଜୟ ସ୍ୱୀକାର କଲା । କାମରାଜ ନିଜେ ମଧ୍ୟ ଏଇ ନିର୍ବାଚନରେ ପରାଜିତ ହେଲେ । କେନ୍ଦ୍ରରେ ମାତ୍ର ୪୦ ଗୋଟି ଆସନ ଅଧିକା ଲାଭକରି କଂଗ୍ରେସ ଦଳ ନିଜର ସଂଖ୍ୟାରିଷ୍ଠତା ହାସଲ କଲା ।

ଏହାପରେ ପୁଣି ଥରେ ଯେତେବେଳେ କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡର ନେତା ନିର୍ବାଚନର ସମୟ ଆସିଲା, ସେତେବେଳେ ପୁଣି ମଧ୍ୟ ଦଳ ମଧ୍ୟରେ ଉଦ୍ଦଳ

ଆରମ୍ଭ ହୋଇଗଲା । ଏଥର ମଧ୍ୟ ଦେଶାଇ ଶ୍ରୀମତୀ ଗାନ୍ଧୀଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରିବେ ବୋଲି ଠିକ୍ କଲେ । ଶ୍ରୀମତୀ ଗାନ୍ଧୀଙ୍କ ଉପେକ୍ଷା ନୀତି ଯୋଗୁ କାମରାଜ ଏଥର ଦେଶାଇଙ୍କୁ ସାହାଯ୍ୟ କରୁଥାନ୍ତି । ଅତୁଲ୍ୟ ଘୋଷ, ଏସ. କେ. ପାଟିଲ, ସି. ବି. ଗୁପ୍ତ ଏବଂ ଅନ୍ୟ ନେତାମାନଙ୍କ ସମର୍ଥନ ପାଇଁ ଶ୍ରୀମତୀ ଗାନ୍ଧୀ ସେମାନଙ୍କ ସହ କଥାବାର୍ତ୍ତା କରୁଥାନ୍ତି । ସେଇ ଆଲୋଚନା ପରେ ଜଗଜୀବନ ରାମ ଏବଂ ଅତୁଲ୍ୟ ଘୋଷ ପ୍ରଥମେ କାମରାଜଙ୍କ ମତାମତ ଲୋଡ଼ିଲେ ।

ଯେତେବେଳେ ଦେଶାଇ କାମରାଜଙ୍କ ସହିତ ଦେଖାକରି ତାଙ୍କ ପ୍ରାର୍ଥୀତ୍ୱ ସମ୍ପର୍କରେ କହିଲେ; ସେତେବେଳେ କାମରାଜ କହିଲେ, ମୁଁ ସବୁ କଥା ଜାଣୁଛି; ହେଲେ ମୁଁ ଏବେ ପକ୍ଷହୀନ, ତଥାପି ଦେଶାଇ ଜାଣିଥିଲେ ଯେ, କାମରାଜ ସିଣ୍ଡିକେଟର ମୁଖ୍ୟ, ଏଣୁ ତାଙ୍କର ଏବେବି ଅଦ୍ଭୁତ କ୍ଷମତା ରହିଛି ।

ଏହି ସମୟରେ ପାର୍ଲିଆମେଣ୍ଟର ନେତା ନିର୍ବାଚନ ପାଇଁ ଦେଶାଇ ପ୍ରାର୍ଥୀ ହେବେ ବୋଲି ଘୋଷଣା କଲେ । ତାଙ୍କର ଘୋଷଣା ସରିବା ପରେ ଶ୍ରୀମତୀ ଗାନ୍ଧୀ ମଧ୍ୟ ସ୍ପଷ୍ଟିକରଣ ଦେଇ କହିଲେ, ସେ ଆଗରୁ ନେତ୍ରୀ ଥିଲେ; ଏଣୁ ସେ ନେତ୍ରୀ ହେବା ପାଇଁ ନିଶ୍ଚିତ ଭାବରେ ପ୍ରାର୍ଥୀ ହେବେ । ଫଳରେ ନେତା ନିର୍ବାଚନ ପାଇଁ ପ୍ରତିଦ୍ୱନ୍ଦ୍ୱିତା ହେବା ନିଶ୍ଚିତ ବୋଲି ସମସ୍ତେ ଜାଣିପାରିଲେ । ଏହା ସତ୍ତ୍ୱେ ବି କାମରାଜ କିପରି ସର୍ବସମ୍ମତ ନେତା ନିର୍ବାଚନ ହୋଇପାରିବ ସେଥିନେଇଁ ଚେଷ୍ଟା ଚଳାଇ ଥାଆନ୍ତି । ୧୯୬୭ ମସିହା ମାର୍ଚ୍ଚ ୧୩ ତାରିଖରେ ସେ ପୁନଶ୍ଚ ମିଳାମିଶା ପାଇଁ ଉଦ୍ୟମ କଲେ ।

କାମରାଜଙ୍କ ପରାମର୍ଶ ଗ୍ରହଣ କରି ଦେଶାଇ ଘୋଷଣା କଲେ ଯେ, ଶ୍ରୀମତୀ ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳରେ ତାଙ୍କୁ ଉପ ପ୍ରଧାନମନ୍ତ୍ରୀ କରି ସ୍ୱରାଷ୍ଟ୍ର ମନ୍ତ୍ରଣାଳୟରେ ଦେଲେ ସେ ପ୍ରତିଦ୍ୱନ୍ଦ୍ୱିତାରୁ ଓହରି ଯିବେ, କିନ୍ତୁ ଶ୍ରୀମତୀ ଗାନ୍ଧୀ ଏଇ ପ୍ରସ୍ତାବରେ ରାଜି ହେଲେ ନାହିଁ । କାରଣ ସେ ସମୟରେ ସ୍ୱରାଷ୍ଟ୍ରମନ୍ତ୍ରୀ ଥିବା ଚୌହାନ ଶ୍ରୀମତୀ ଗାନ୍ଧୀଙ୍କର ଥିଲେ ଜଣେ ବିଶିଷ୍ଟ ସମର୍ଥକ, ଏଣୁ ତାଙ୍କଠାରୁ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଦାୟିତ୍ୱ କାଢ଼ିଆଣି ତାଙ୍କୁ ଅସନ୍ତୁଷ୍ଟ କରିବାକୁ ସେ ଚାହୁଁ ନଥିଲେ ।

ଫଳରେ ପୁଣି କଥାବାର୍ତ୍ତା ଅଚଳ ହୋଇପଡ଼ିଲା । ଏହା ସତ୍ତ୍ୱେ ଦଳର ପ୍ରମୁଖ ସଦସ୍ୟମାନେ ସେମାନଙ୍କ ଉଦ୍ୟମ ଚାଲୁରଖିଥାନ୍ତି । କାରଣ ସେମାନଙ୍କର ଧାରଣା ଥିଲା ଯେ, କଂଗ୍ରେସ ଏପରି ଦୁର୍ବଳ ସମୟରେ ଯଦି ନେତା ନିର୍ବାଚନ ପାଇଁ ପ୍ରତିଦ୍ୱନ୍ଦ୍ୱିତା ହୁଏ, ତେବେ କଂଗ୍ରେସ ଦଳ ଏକ ସଂକଟର ସମ୍ମୁଖୀନ ହେବ । ଏଣୁ ସେମାନେ ଏହା ଚାହୁଁ ନଥିଲେ; ହେଲେ ଉଭୟ ନେତା ପରସ୍ପର ନିଷ୍ପତ୍ତିରେ ଅଟଳ ରହିଥାନ୍ତି ।

ଶେଷରେ ଦେଶାଇ ରାଜିହେଲେ । ସେ ପ୍ରଧାନମନ୍ତ୍ରୀଙ୍କ ପାଖକୁ ଖବର ପଠାଇଲେ ଯେ, ଯଦି ତାଙ୍କୁ ଉପପ୍ରଧାନମନ୍ତ୍ରୀ କରଯିବ, ତେବେ ସେ ପ୍ରତିଦ୍ୱନ୍ଦ୍ୱତାରୁ ଓହରି ଯିବେ । ଶ୍ରୀମତୀ ଗାନ୍ଧି ତାଙ୍କର ଏଇ ପ୍ରସ୍ତାବରେ ରାଜି ହେଲେ ।

ମୋରାରଜୀ ଦେଶାଇଙ୍କୁ ଉପ-ପ୍ରଧାନମନ୍ତ୍ରୀ କରଗଲା ସତ, ତାଙ୍କୁ କୌଣସି ବିଶେଷ କ୍ଷମତା ଦିଆଗଲା ନାହିଁ । ପ୍ରଧାନମନ୍ତ୍ରୀ କହିଲେ, ସେ ଉପ-ପ୍ରଧାନମନ୍ତ୍ରୀ ହୋଇପାରନ୍ତି, ମାତ୍ର ତାଙ୍କର କ୍ଷମତା ଜଣେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀଙ୍କର ସମାନ ।

ପ୍ରଧାନମନ୍ତ୍ରୀଙ୍କର ଏପରି ଘୋଷଣା ଶୁଣି ଦେଶାଇ ଅସନ୍ତୁଷ୍ଟ ହେଲେ ।

ସେତେବେଳକୁ ତ କଂଗ୍ରେସ ମଧ୍ୟରେ ଦୁଇଗୋଷ୍ଠୀ ହୋଇ ଯାଇଥାଏ କହିଲେ ଚଳେ । ଶାସନ କ୍ଷେତ୍ରରେ ଶ୍ରୀମତୀ ଗାନ୍ଧିଙ୍କ ପ୍ରଭୁତ୍ୱ ଥିବାବେଳେ ସଙ୍ଗଠନ କ୍ଷେତ୍ରରେ ବିରୋଧୀମାନଙ୍କର ମଧ୍ୟ ଯଥେଷ୍ଟ ପ୍ରଭୁତ୍ୱ ଥିଲା । ଉଭୟ ଦଳ ବଳ କଷାକଷିହେବା ପାଇଁ ରହୁଁଥାନ୍ତି । ଏହି ସମୟରେ କାମରାଜଙ୍କ କଂଗ୍ରେସ ସଭାପତି କାର୍ଯ୍ୟକାଳ ପୂରିଗଲା । ଏହାପରେ କଂଗ୍ରେସ ସଭାପତି ପଦବେ ନିର୍ବାଚିତ ହେଲେ ଏସ. ନିଜଲିଙ୍ଗପ୍ପା । ତାଙ୍କ ସହିତ ମଧ୍ୟ ଶ୍ରୀମତୀ ଗାନ୍ଧିଙ୍କ ମତଭେଦ ଘଟିଲା ।

କଂଗ୍ରେସ ସଭାପତି ପଦବେ ନିଜଲିଙ୍ଗପାଙ୍କ କାର୍ଯ୍ୟକାଳ ୧୯୬୯ ଡିସେମ୍ବର ୩୧ରେ ଶେଷ ହୋଇଯିବା କଥା । ସେଇ ଦୃଷ୍ଟିରୁ ଶ୍ରୀମତୀ ଗାନ୍ଧି ଏବଂ ତାଙ୍କର ସମର୍ଥକମାନେ ସେଇ ପଦବୀରେ ତାଙ୍କ ଗୋଷ୍ଠୀର ଜଣକୁ ନିଯୁକ୍ତ କରି ଜାତୀୟ ସଙ୍ଗଠନକୁ ନିୟନ୍ତ୍ରଣ କରିବା ପାଇଁ । ମାତ୍ର ସଙ୍ଗଠନର ନେତାମାନେ ଦଳ ଉପରେ ନିଜର ଆଧିପତ୍ୟ ବଜାୟ ରଖିବାକୁ ବିଶେଷ ତତ୍ପର ଥାଆନ୍ତି । ଏଣୁ ସେମାନେ ଦଳୀୟ ବୈଠକରେ ଏକ ପ୍ରସ୍ତାବ ଗ୍ରହଣ କରି ନିଜଲିଙ୍ଗପାଙ୍କ କାର୍ଯ୍ୟକାଳ ୧୯୭୦ ଶେଷ ପର୍ଯ୍ୟନ୍ତ ବଢାଇ ଦେଲେ । ଫଳରେ କଂଗ୍ରେସର ଏଇ ଦୁଇ ଗୋଷ୍ଠୀ ମଧ୍ୟରେ ଗୋଷ୍ଠୀ ବିବାଦ ତୀବ୍ରତର ହେଲା ।

ଦିଲ୍ଲୀ ନିକଟବର୍ତ୍ତୀ ଫରିଦାବାଦଠାରେ ୧୯୬୯ ଏପ୍ରିଲରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଲା । ସେଇ ଅଧିବେଶନରୁ ଏଇ ଦୁଇଗୋଷ୍ଠୀ ମଧ୍ୟରେ ପ୍ରବଳ ବଳ କଷା-କଷି ଚାଲିଲା ।

ଫରିଦାବାଦ କଂଗ୍ରେସ ଅଧିବେଶନର ପ୍ରାୟ ଏକ ମାସ ମଧ୍ୟରେ ଅର୍ଥାତ୍ ୧୯୬୯ ମସିହା ମେ ୩ ତାରିଖରେ ରାଷ୍ଟ୍ରପତି ଜାକିର ହୁସେନଙ୍କର ମୃତ୍ୟୁହେଲା ଏବଂ

ଉପରାଷ୍ଟ୍ରପତି ଭି: ଭି: ଗିରି ଅସ୍ଥାୟୀ ରାଷ୍ଟ୍ରପତି ଭାବେ ଦାଇତ୍ୱ ତୁଲାଇଲେ । ପରବର୍ତ୍ତୀ ରାଷ୍ଟ୍ରପତି କିଏ ହେବ, ଏହି ପ୍ରଶ୍ନ ଉପରେ ଦୁଇଗୋଷ୍ଠୀ ମଧ୍ୟରେ ପ୍ରବଳ ଟଣା ଓଟରା ଆରମ୍ଭ ହୋଇଗଲା ।

ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧି ପ୍ରକୃତରେ କାହାକୁ ସପକ୍ଷ କରୁଛନ୍ତି ତାହା ସେ ପ୍ରକାଶ କଲେ ନାହିଁ । ମାତ୍ର ସେ ଜଗଜୀବନରାମ ବା ଭି: ଭି: ଗିରିଙ୍କୁ ସମର୍ଥନ କରିବେ ବୋଲି ଘୋଷଣା କଲେ । ଫଳରେ ପୁଣି ଏକ ସମସ୍ୟା ଦେଖାଦେଲା । ଏଣୁ ପ୍ରମୁଖ ନେତୃବୃନ୍ଦ ଏହାର ଏକ ମିଳାମିଶା କରିବାପାଇଁ କହିଲେ ।

କଂଗ୍ରେସ କମିଟି ଅଧିବେଶନ ୧୯୬୯ ଜୁଲାଇ ମାସରେ ବାଙ୍ଗାଲୋରରେ ଅନୁଷ୍ଠିତ ହେଲା । ଅଧିବେଶନର ଗୋଟିଏ ଦିନ ପରେ ଶ୍ରୀମତୀ ଗାନ୍ଧି ସେଥିରେ ଯୋଗ-ଦେଲେ । କିନ୍ତୁ ତାହା ପୂର୍ବରୁ ସେ କେତେକ ଚିନ୍ତା ପ୍ରାରକ ପତ୍ରରୂପେ ଫକିରୁଦ୍ଦିନ ଅଲି ଅହମ୍ମଦଙ୍କ ଜରିଆରେ ପଠାଇ ତାହା କମିଟିକୁ ବିଚାର କରିବାକୁ ଅନୁରୋଧ କଲେ । ତାଙ୍କର ଚିନ୍ତା କାର୍ଯ୍ୟକ୍ରମରେ ବ୍ୟାଙ୍କ ଜାତୀୟକରଣ, ଭୂସଂସ୍କାର, ସମାଜବାଦୀ ଅର୍ଥନୀତି ସଂକ୍ରାନ୍ତ କେତେକ ପ୍ରସ୍ତାବ ଆଦି ଥିଲା । ଆଲୋଚନା ପରେ ତାଙ୍କ ପ୍ରସ୍ତାବ କମିଟି ଦ୍ୱାରା ଅନୁମୋଦିତ ହୋଇଗଲା ।

ଏହା ସତ୍ତ୍ୱେ ମଧ୍ୟ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀ ମନୋନୟନ ନେଇ ମତଭେଦ ରହିଲା । କଂଗ୍ରେସ କମିଟି ତତ୍କାଳୀନ ବାଚସ୍ପତି ସଞ୍ଜୀବରେଡ୍ଡୀଙ୍କ ନାମ ପ୍ରସ୍ତାବ କଲାବେଳେ; ଯଦିଓ ପ୍ରଧାନମନ୍ତ୍ରୀ ତାଙ୍କ ମନୋନୟନ ପତ୍ରରେ ଦସ୍ତଖତ କଲେ, ତଥାପି ସେ ଶେଷ ମୁହୂର୍ତ୍ତରେ ଭି ଭି. ଗିରିଙ୍କୁ ସ୍ୱାଧୀନ ପ୍ରାର୍ଥୀଭାବେ ଠିଆକରାଇଲେ । ଶେଷରେ ସଞ୍ଜୀବରେଡ୍ଡୀ ଭି: ଭି: ଗିରିଙ୍କଠାରୁ ପରାଜିତ ହେଲେ । ଏଥିରୁ ସ୍ପଷ୍ଟ ହୋଇଗଲା ଯେ, ଭି· ଭି· ଗିରିଙ୍କୁ ଭୋଟଦେବା ପାଇଁ ଶ୍ରୀମତୀ ଗାନ୍ଧି ତାଙ୍କ ମନ୍ତ୍ରୀମଣ୍ଡଳ ତଥା ରାଜ୍ୟର ବିଧାନସଭା ସଦସ୍ୟମାନଙ୍କ ଉପରେ ଚାପ ଦେଇଥିଲେ ।

ସେହି ବର୍ଷ ଅକ୍ଟୋବର ମାସର ଦ୍ୱିତୀୟାର୍ଦ୍ଧ ବେଳକୁ ଉଭୟ ଗୋଷ୍ଠୀ ପରସ୍ପର ବିରୁଦ୍ଧରେ ଖୋଲାଖୋଲି ଅଭିଯୋଗ ଆରମ୍ଭ କଲେ । ଗୋଟିଏ ଗୋଷ୍ଠୀ ଅନ୍ୟ ଗୋଷ୍ଠୀ ବିରୁଦ୍ଧରେ ଦୋଷାରୋପ କରୁଥାଏ ଯେ, କଂଗ୍ରେସ ନୀତି ଏବଂ ଶୃଙ୍ଖଳା ଭଙ୍ଗ କରିଛି । ୧୯୬୯ ମସିହା ନଭେମ୍ବର ୧୨ ତାରିଖରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ୧୧ ଜଣ ସଭ୍ୟ ବୈଠକରେ ମିଳିତ ହୋଇ ଶୃଙ୍ଖଳାଭଙ୍ଗ ଅଭିଯୋଗରେ ଶ୍ରୀମତୀ ଗାନ୍ଧିଙ୍କୁ କଂଗ୍ରେସରୁ ବହିଷ୍କାର କରିଦେଲେ ଏବଂ ନୂତନ ନେତା ନିର୍ବାଚନ କରିବାକୁ କଂଗ୍ରେସର ପାର୍ଲିଆମେଣ୍ଟାରୀ ଦଳକୁ ନିର୍ଦ୍ଦେଶ ଦେଲେ ।

ଉପରୋକ୍ତ ନିଷ୍ପତ୍ତିର ତିନିଦିନ ପରେ ଯେତେବେଳେ କଂଗ୍ରେସ ପାର୍ଲିଆ-ମେଣ୍ଟାରୀ ଦଳ ବୈଠକ ବସିଲା ସେଥିରେ ଦେଖାଗଲା ଯେ, ଶ୍ରୀମତୀ ଗାନ୍ଧିଙ୍କୁ ୩୩୦ ଜଣ

ସମର୍ଥନ କରୁଥିଲେ । ସେ ସମୟରେ ଉଭୟ ଗୃହରେ କଂଗ୍ରେସର ସଭ୍ୟ ସଂଖ୍ୟା ଥିଲା ୪୩୨ ।

ଏହାପରେ କଂଗ୍ରେସ ପାର୍ଲିଅମେଣ୍ଟାରୀ ଦଳ ପରେ ସମିତ ହେଲା । ସିଣ୍ଡିକେଟ ଗୋଷ୍ଠୀ ସଙ୍ଗଠନ କଂଗ୍ରେସ ନାମଦେଇ ବିରୋଧୀ ଦଳରେ ବସିଲେ । ଲୋକସଭାରେ ମୋଟ ୨୮୨ ଜଣ କଂଗ୍ରେସ ସଭ୍ୟଙ୍କ ମଧ୍ୟରୁ ୬୫ ଜଣ ନୂତନ ବିରୋଧୀ ଦଳରେ ଯୋଗଦେଲେ । ଶେଷରେ ୧୯୬୯ ଡିସେମ୍ବର ମାସରେ କଂଗ୍ରେସ ଦୁଇଭାଗ ହୋଇଗଲା । କାମରାଜ ସଙ୍ଗଠନ କଂଗ୍ରେସରେ ଯୋଗ ଦେଲେ ।

ଭାରତର ରାଜନୈତିକ ଆକାଶରେ ଏକ ଉଜ୍ଜ୍ୱଳ ତାରକା ରୂପେ କାମରାଜଙ୍କ ଆବିର୍ଭାବ କ୍ଷଣସ୍ଥାୟୀ, କିନ୍ତୁ ତାଙ୍କର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ଭାରତକୁ ଦୁଇ ଦୁଇଥର ସମ୍ଭାବ୍ୟ ରାଜନୈତିକ ସଂକଟରୁ ରକ୍ଷା କରିଥିଲେ । ଯେଉଁ ଦୁଇ ଜଣଙ୍କୁ ଲାଲ୍ ବାହାଦୁର ଶାସ୍ତ୍ରୀ ଓ ଇନ୍ଦିରା ଗାନ୍ଧି ସେ ପ୍ରଧାନମନ୍ତ୍ରୀ କରିଥିଲେ ସେମାନଙ୍କ ସହିତ ନୀତିଗତ ପାର୍ଥକ୍ୟ ହୋଇ ସେମାନେ ପରସ୍ପରଠାରୁ ଦୂରେଇ ଯାଇଥିଲେ ମଧ୍ୟ ତାଙ୍କର ସେ ଦୁହିଁଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଥିଲା ଏବଂ ସେମାନେ ମଧ୍ୟ କାମରାଜଙ୍କୁ ସମ୍ମାନ ଦେଉଥିଲେ ।

୧୯୬୭ରେ ବିଭିନ୍ନ ରାଜ୍ୟ ନିର୍ବାଚନରେ କଂଗ୍ରେସର ପରାଜୟ ଘଟିଲା । ତାଙ୍କର ପ୍ରଭୁତ୍ୱ କ୍ରମେ ହ୍ରାସ ପାଇବାକୁ ଲାଗିବାରୁ ସେ ତାମିଲନାଡୁ ରାଜନୀତିକୁ ଫେରିଆସିଲେ । ସେତେବେଳେ ତାମିଲନାଡୁରେ ଡି. ଏମ. କେ. ଦଳ ଶାସନ କରୁଥାଏ । ସେ ଏଇ ଡି. ଏମ୍. କେ. ସରକାରଙ୍କର ବିଭିନ୍ନ ଦୁର୍ନୀତି ସମ୍ପର୍କରେ ଲୋକମାନଙ୍କୁ ବୁଝାଇ ଦେଶରେ ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ଚେଷ୍ଟାକଲେ । ତାଙ୍କର ଚେଷ୍ଟା ଫଳରେ ଡି ଏମ୍. କେ. ବିଭକ୍ତ ହେଲା ଏବଂ ଅନ୍ନା ଡି. ଏମ୍ କେ. ନାମକ ଏକ ଦଳ ଗଢ଼ଉଠିଲା । ଏହି ଦଳ କଂଗ୍ରେସକୁ ସମର୍ଥନ କରିବ ବୋଲି ଘୋଷଣା କଲା । ହେଲେ କାମରାଜ କେବେହେଲେ ଡି. ଏମ୍. କେ. ଦଳ ସହିତ ମିଶ୍ରଣ ଋଜୁ ନଥିଲେ । ଏଣୁ ସେଠାରେ ସରକାରକୁ ଭାଙ୍ଗି ଦିଆଯାଇ ରାଷ୍ଟ୍ରପତି ଶାସନ ପ୍ରବର୍ତ୍ତନ କରାଗଲା ।

କାମରାଜ ଆଜି ଆଉ ନାହାଁନ୍ତି, କିନ୍ତୁ ଦେଶର ଗଣତନ୍ତ୍ରକୁ ରକ୍ଷା କରିବାକୁ ସେ ଯାହା କରିଥିଲେ, ସେଥିପାଇଁ ସେ ଚିରସ୍ମରଣୀୟ ହୋଇ ରହିବେ । ତାଙ୍କ ନିଷ୍ଠାପର ସେବାଯୋଗୁ ତାଙ୍କୁ "ଭାରତରତ୍ନ" ଉପାଧିରେ ଭୂଷିତ କରାଯାଇଥିଲା ।



## ବିଶ୍ୱ ବିଚିତ୍ରା

### ଦେଶରେ ୩୦ ଲକ୍ଷ ଟେଲିଫୋନ୍

ଭାରତରେ ବର୍ତ୍ତମାନସୁଦ୍ଧା ୩୦ ଲକ୍ଷ ଫୋନ୍ ରହିଛି । ବିଂଶ ଶତାବ୍ଦୀ ଶେଷ ସୁଦ୍ଧା ଏହାର ସଂଖ୍ୟା ତିନିକୋଟି ହେବ ।

### ଭାରତରେ ବ୍ୟାଘ୍ର ସଂଖ୍ୟା ବୃଦ୍ଧି

ସମଗ୍ର ଭାରତବର୍ଷରେ ୪୦୦୫ ବ୍ୟାଘ୍ର ରହିଥିବାର ଏକ ଗଣନାରୁ ଜଣାପଡ଼ିଛି । ବ୍ୟାଘ୍ର ସଂରକ୍ଷଣ ଅଞ୍ଚଳରେ ଗତବର୍ଷ ସର୍ବମୋଟ ବ୍ୟାଘ୍ର ରହିଥିଲେ ୧୧୨୧ ।

### ଇନ୍ଦିରା ଗାନ୍ଧି ମୁକ୍ତ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି

ନୂତନଭାବେ ପ୍ରତିଷ୍ଠିତ ଇନ୍ଦିରା ଗାନ୍ଧି ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟର ସର୍ବପ୍ରଥମ କୁଳପତି ହେଉଛନ୍ତି ପ୍ରଫେସର ଜି. ରାମ ରେଡ୍ଡି ।

### ଦେଶରେ ତାପଜ ବିଦ୍ୟୁତ ଉତ୍ପାଦନ

୧୯୮୪—୮୫ ଆର୍ଥିକ ବର୍ଷରେ ଦେଶର ବିଭିନ୍ନ ତାପଜ ବିଦ୍ୟୁତ କେନ୍ଦ୍ରରୁ ୯୮୬୭ କୋଟି ୟୁନିଟ୍ ବିଦ୍ୟୁତ୍ ଉତ୍ପାଦିତ ହୋଇଥିଲା ।

### ଆମେରିକାରେ ପ୍ରତି ପାଞ୍ଚଜଣରେ ଜଣେ ଶିଶୁ ଦରିଦ୍ର

ଆମେରିକାର ପ୍ରତି ୫ଜଣ ଶିଶୁଙ୍କ ମଧ୍ୟରେ ଜଣେ ଦରିଦ୍ର ବୋଲି ୟୁନିସେଫ ରିପୋର୍ଟରେ ପ୍ରକାଶିତ ହୋଇଛି ।

### ଶକଟ ସାହାଯ୍ୟରେ ପାହାଡ ଆରୋହଣ

ତାମିଲନାଡୁର ଚେନିମଲାଇ ପାହାଡରେ ସୁବ୍ରମଣ୍ୟଙ୍କ ମନ୍ଦିରକୁ ୧୩୨୦ଟି ପାହାଚ ଅତିକ୍ରମ କରି ଏକ ଶକଟ ପହଞ୍ଚି ଥିଲା । ଏହି ପାହାଚ ଗୁଡ଼ିକର ଲମ୍ବ ୧୫ଫୁଟ୍, ଉଚ୍ଚତା ୯ ଇଞ୍ଚ୍ ।

**ବିଶ୍ୱ ସୁନ୍ଦରୀ ନିନା ସିକିଲିଆ**

ଜାପାନର ସୁକୁବାଠାରେ ଅନୁଷ୍ଠିତ ବିଶ୍ୱସୁନ୍ଦରୀ ପ୍ରତିଯୋଗିତାରେ ଭେନେଜୁଏଲାର ନିନା ସିକିଲିଆ ହର୍ନାଣ୍ଡେଜ ମିସ୍ ଇଣ୍ଟର ନ୍ୟାସନାଲ ଉପାଧି ପାଇଛନ୍ତି । ଆମେରିକାର ସାବିନେରିନ ଲୁବର୍ଟ ଓ ହଲଣ୍ଡର ଜାକ୍ୱେଲାଇନ୍ ଷ୍ଟ୍ରୁମାନ ୨ୟ ଏବଂ ୩ୟ ହୋଇଛନ୍ତି ଏହି ପ୍ରତିଯୋଗିତାରେ ।

**ବିଶ୍ୱର ଉଚ୍ଚତମ କେକ୍**

ବ୍ୟାଙ୍ଗକକ୍‌ର ଏକ ହୋଟେଲରେ ବିବାହ ଉତ୍ସବ ପାଳନ ଅବସରରେ ଅତ୍ୟଧିକ ଭେଳ୍ ତିଆରି ହୋଇଥିଲା । ଏହାକୁ ବିଶ୍ୱରେ ଉଚ୍ଚତମ କେକ୍ ବୋଲି କୁହାଯାଉଛି । ଏହାର ଉଚ୍ଚତା ୪୫ ଫୁଟ । କେକ୍‌ଟିର ୨୦ଟି ପଟ୍ଟ ଥିଲା । ୩୦୦ ଜଣ ବ୍ୟକ୍ତି ତିନିଦିନରେ ଏହା ତିଆରି କରିଥିଲେ । ଏଥିରେ ୧୦ ହଜାର ଅଣ୍ଡା, ୨୦୦ କିଲୋଗ୍ରାମ ଅଟା, ୨୦୦ ଲିଟର କ୍ଷୀର, ୨୫୦ କିଲୋଗ୍ରାମ ଲହୁଣୀ ବ୍ୟବହୃତ ହୋଇଥିଲା । ତିଆରି ସମୟରେ ୧୩୨୫ କିଲୋଗ୍ରାମ ବରଫ ମଧ୍ୟ ବ୍ୟବହାର କରାଯାଇଥିଲା ।

**ଦେଶର ଆମଦାନି ଓ ରପ୍ତାନୀ ପରିମାଣ**

୧୯୮୪–୮୫ ଆର୍ଥିକ ବର୍ଷରେ ଦେଶରେ ଆମଦାନି ଓ ରପ୍ତାନୀ ପରିମାଣ ଯଥାକ୍ରମେ ୧୬୨୨୮ କୋଟି ୨୮ ଲକ୍ଷ ଟଙ୍କା ଏବଂ ୧୧୪୬୫ କୋଟି ୯୫ ଲକ୍ଷ ଟଙ୍କା ବୋଲି ସରକାରୀ ରିପୋର୍ଟରୁ ପ୍ରକାଶ ।

**କୃଷ୍ଣକାୟ ବ୍ୟକ୍ତି ଗୁରୁତ୍ୱପୂର୍ଣ୍ଣ ପଦବୀରେ**

ଦକ୍ଷିଣ ଆଫ୍ରିକାର ଜଣେ ଶିକ୍ଷକ ତଥା ଭାରତୀୟ ବଂଶୋଦ୍ଭବ ବ୍ୟକ୍ତି ପିକ୍-ଇବ୍ରାହିମ୍ ଷ୍ଟକ୍ ଏକସ୍‌ଚେଞ୍ଜର ନିର୍ଦ୍ଦେଶକ ପଦ ପାଇ ଦକ୍ଷିଣ ଆଫ୍ରିକାରେ ଏକ ଇତିହାସ ସୃଷ୍ଟି କରିଛନ୍ତି । ସେ ଜୋହାନସ୍‌ବର୍ଗର ବୃହତ୍ ଷ୍ଟକ୍ ଏକ୍‌ସଚେଞ୍ଜ ଫାର୍ମର ନିର୍ଦ୍ଦେଶକ ।

**ବିଶ୍ୱର ବୃହତ୍ତମ କାବ୍ୟ 'ମହାଭାରତ'**

ପ୍ରାଚୀନ ଭାରତୀୟ ପୁରାଣ 'ମହାଭାରତ' ବିଶ୍ୱର ସର୍ବବୃହତ୍ କାବ୍ୟ । ଏହାର ଧାଡ଼ି ସଂଖ୍ୟା ୨୨୦ ୦୦୦ । ଏହା ୧୮ ଖଣ୍ଡରେ ବିଭକ୍ତ । ମହାଭାରତର ପୃଷ୍ଠା ସଂଖ୍ୟା ହେଉଛି ୫୪୦୦ । ଖ୍ରୀଷ୍ଟପୂର୍ବ ୪୦୦ରୁ ୧୫୦ ମଧ୍ୟରେ ଏହାର ରଚନା ହୋଇଥିଲା ।

**ସମୁଦ୍ର ଜଳ କୋଟିଏ ଗ୍ୟାଲନ୍‌ରେ ୩ରିଆଉନ୍‌ସ ଲବଣ**

ସମୁଦ୍ରଜଳ ଏକ ଗ୍ୟାଲେନରେ ୩ରିଆଉନ୍‌ସ ଲବଣ ରହିଛି । ସାଗର ଏବଂ

ମହାସାଗରର ଜଳକୁ ମିଶାଇଦେଲେ ୫୦୦୦୦୦୦ କ୍ୟୁବିକ୍ ମାଇଲ ଶୂନ୍ୟସ୍ଥାନ ଭରିବ ।

**କାଲିଫର୍ଣ୍ଣିଆରେ ସିକ୍ୟୁଆ ବୃକ୍ଷ**

କାଲିଫର୍ଣ୍ଣିଆର ପ୍ରଶାନ୍ତ ମହାସାଗର ଉପକୂଳରେ ସିକ୍ୟୁଆ ବୃକ୍ଷ ହେଉଛି ବିଶ୍ୱର ବୃହତ୍ତମ । ଏହି ବୃକ୍ଷର ଉଚ୍ଚତା ୩୨୫ ଫୁଟ ଏବଂ ମୋଟ ୩୦ ଫୁଟ । ଏହି ବୃକ୍ଷଗୁଡ଼ିକ ପ୍ରାୟ ୫୦୦୦ ବର୍ଷ ଧରି ବିଶ୍ୱ ପୃଷ୍ଠରେ ବଞ୍ଚି ରହିଥାଏ ।

**ମହାଶୂନ୍ୟରେ ସୂର୍ଯ୍ୟର ଉତ୍ତାପ**

ମହାଶୂନ୍ୟରେ ସୂର୍ଯ୍ୟର ଉତ୍ତାପ ହେଉଛି ୧୦.୦୦୦° ଫାରେନ୍‌ହିଟ୍ । କେତେକ ନକ୍ଷତ୍ରର ମହାଶୂନ୍ୟରେ ୭୦୦୦୦° ଫାରେନହିଟ୍ ଉତ୍ତାପ ରହିଥାଏ ।

**ବିଶ୍ୱର ବୃହତ୍ତମ ଉଡ଼ାଜାହାଜ**

ବିଶ୍ୱର ବୃହତ୍ତମ ଉଡ଼ାଜାହାଜ ହେଉଛି ସୋଭିଏତ୍ ଦେଶର ଜେଟ୍ ଅଣ୍ଟୋନୋଭ–୧୦୪ । ଏହାର ଓଜନ ହେଉଛି ୪୦୫ ଟନ୍ ଏବଂ ଏଥିରେ ଚାରୋଟି ଇଞ୍ଜିନ ରହିଛି ।

**ଗଙ୍ଗା କୂଳରେ ୧୦୦ଟି ଟାଉନ୍**

ଗଙ୍ଗା କୂଳରେ ଭାରତର ୧୦୦ଟି ଟାଉନ୍ ରହିଛି । ଉତ୍ତର ପ୍ରଦେଶରେ ୨୬, ବିହାରରେ ୧୫, ପଶ୍ଚିମ ବଙ୍ଗରେ ୫୯ଟି ଟାଉନ୍ ରହିଅଛି ।

**ବିଶ୍ୱରେ ସୁମିଷ୍ଟ ବୃକ୍ଷ**

ଦକ୍ଷିଣ ଆମେରିକାର ପାରାଗୁଏରେ ଷ୍ଟେଭିଅ ବୃକ୍ଷ ହେଉଛି ସୁମିଷ୍ଟ । ଏହି ବୃକ୍ଷର ରସର ଗୋଟାଏ ଡ୍ରପ୍ ମିଶାଇଦେଲେ କପ୍‌ଟାଏ ଚା' ପାନ କରଯାଇ ପାରିବ ।

**ସର୍ବାଧିକ ବୟସ୍କା ମହିଳା ଭୋଟର୍**

୧୯୮୪ ଲୋକସଭା ନିର୍ବାଚନରେ ମହାରାଷ୍ଟ୍ରର ପୁନେଠାରେ ୧୨୮ ବର୍ଷ ବୟସ୍କା ମହିଳା ଡାନହୁବ.ଇ ମାଲହରି ଇଙ୍ଗହାଲ୍ ତାଙ୍କର ଭୋଟ ଦେଇଥିଲେ । ଭୋଟ ଦେବାରେ ସେ ଅଧିକ ବୟସ୍କା ମହିଳା ।

**ପୃଥିବୀର ଧନିକ ବାଦ୍ୟକାର**

୩୫ ବର୍ଷ ବୟସ୍କ ଇଂରେଜ ବାଦ୍ୟକାର ଆଣ୍ଡ୍ରେଭ ଲିଓଡ୍ ଓ୍ୱେବରଙ୍କର ସମ୍ପତ୍ତିର ମୂଲ୍ୟ ହେଉଛି ୩୦୦ ନିୟୁତ ପାଉଣ୍ଡ ।

**ଜାଣିରଖ**

ପୋଲିଓ ଟିକାର ଉଦ୍ଭାବକ—ଡକଟର ଜୋନାସ ସାଲ୍‌କି ।

ଏକ ମିଲିମିଟର ମଣିଷ ରକ୍ତରେ ଲୋହିତ ରକ୍ତକଣିକାର ପରିମାଣ—୪.୫ରୁ ୫ ଅୟୁତ ।

ମଣିଷର ହୃଦୟର ପମ୍ପ କରୁଥିବା ରକ୍ତର ପରିମାଣ - ୨୦୦୦୦ ଲିଟର ।

ଏଥିଡରେ ଥିବା ସାଧାରଣ ଦ୍ରବ୍ୟର ନାମ - ଭିନଗାର ।

ଚିରଦିନ୍ନୁ କେଉଁ ଦେଶରେ ପୂଜା କରଯାଏ — ଇଜିପ୍ଟରେ ।

**ଜାଣିଚେ କି ?**

| | | |
|---|---|---|
| ପ୍ରଶାନ୍ତ ମହାସାଗରର ଚାବିକାଠି | — | ସିଙ୍ଗାପୁର । |
| ଭାରତର ଛାତି | — | ତିବ୍ବତ । |
| ଭାରତର ଶୁକପକ୍ଷୀ | — | ଅମୀର ଖସ୍ରୁ । |
| ଭଙ୍ଗାନ୍ ସହର | — | ନିଉୟର୍କ । |
| କୃଷିର ଦେଶ | — | ଡେନ୍ମାର୍କ । |
| ବଙ୍ଗଳାର ଦୈନ୍ୟ | — | ଦାମୋଦର ନଦୀ |
| ବାୟୁ ନଗରୀ | — | ଚିକାଗୋ । |

**ଜାଣିବା କଥା**

| | | |
|---|---|---|
| ସବୁଠାରୁ ବୁଦ୍ଧିମାନ ପଶୁ | — | ସିମ୍ପାଞ୍ଜୀ |
| ପୃଥିବୀର କଥିତ ଭାଷାସଂଖ୍ୟା | — | ୨୭୯୬ । |
| ଜେଲ୍ ନଥିବା ଦେଶ | — | ନେଦରଲ୍ୟାଣ୍ଡ । |
| କେଉଁଠି ବିଦ୍ୟୁତ୍ ଶକ୍ତି କୁଅରରୁ ପ୍ରସ୍ତୁତ ହୁଏ | — | ଜାପାନ । |
| ରକ୍ତ ନଥିବା ଜୀବ | — | ପୋହଳା |
| କେଉଁଥିରୁ କ୍ରିକେଟ ବ୍ୟାଟ୍ ତିଆରି ହୁଏ | — | ଉଇଲୋ ଗଛରୁ । |

**ବିଶ୍ୱରେ ଅନ୍ଧସଂଖ୍ୟା ଛାବି କୋଟି**

ସମଗ୍ର ବିଶ୍ୱରେ ଅନ୍ଧ ବ୍ୟକ୍ତିଙ୍କର ସଂଖ୍ୟା ଛାବି କୋଟି । ଭାରତରେ କେବଳ ୯୦ ଲକ୍ଷ ଅନ୍ଧ ରହିଛନ୍ତି । କେରଳ ରାଜ୍ୟରେ ଅନ୍ଧମାନଙ୍କୁ ଏକ ସଂଘ ଧନ୍ଦାମୂଳକ ତାଲିମ ଦେଉଛନ୍ତି । ଏମାନଙ୍କୁ ୨୦୦ ଟଙ୍କାରୁ ୨୨୫ ଟଙ୍କା ପର୍ଯ୍ୟନ୍ତ ଭତ୍ତା ମିଳୁଛି ।

**ବୃହତ୍ତମ ତୁଷାର ଶୈଳ**

ଭାରତୀୟ ଅଭିଯାନ ସମୟରେ ଅଣ୍ଟାର୍କଟିକାରେ ୨୦୦ ବର୍ଗ କିଲୋମିଟର

ଆକାରରେ ଏକ ତୁଷାର ଶୈଳର ସନ୍ଧାନ ମିଳିଥିଲା । ଏହା ବିଶ୍ୱର ବୃହତ୍ତମ ତୁଷାର ଶୈଳ ।

**ନିଉ ।ଦ୍ୟରେ ୧୦୭ ବର୍ଷ ଢାଇଁଢା**

ସୋଭିଏତ୍ ରାଷ୍ଟ୍ରର ଅଫନାପିଆ ଅବ୍ଲା ମୋଭନା ନାମରେ ୧୦୭ ବର୍ଷ ବୟସ୍କା ମହିଳା ସାରଜୀବନକାଳ ନିରମିଷ ଖାଦ୍ୟ ଖାଇ ଆସିଛନ୍ତି । ସେ ଫଳ ମୂଳ, ପନି-ପରିବା, ଦୁଗ୍ଧ ପ୍ରଭୃତି ଖାଦ୍ୟ ଗ୍ରହଣ କରି ସୁସ୍ଥ ରହିଥିଲେ । ୯୯ ବର୍ଷ ବୟସରେ ସେ ପ୍ରଥମ ଥର ପାଇଁ ଦନ୍ତ ଚିକିତ୍ସକଙ୍କର ଦ୍ୱାରସ୍ଥ ହୋଇଥିଲେ ।

**ଭାରତରେ କଫି ଚାଷ**

ଭାରତରେ କର୍ଣ୍ଣାଟକ; ତାମିଲନାଡୁ, କେରଳ, ଆନ୍ଧ୍ରପ୍ରଦେଶ, ଓଡ଼ିଶା ଓ ଉତ୍ତର ପୂର୍ବାଞ୍ଚଳରେ ୨୨୬୮୪୮ ହେକ୍ଟର ଅଞ୍ଚଳ କଫି ଚାଷ ଲାଗି ଉଦ୍ଦିଷ୍ଟ । କଫି ଚାଷରେ ଦେଶରେ ୩୪୪୫୦୫ ଶ୍ରମିକ କାର୍ଯ୍ୟ କରୁଛନ୍ତି । ଭାରତରୁ ୬୫ଟି ରାଷ୍ଟ୍ରକୁ କଫି ରପ୍ତାନୀ କରଯାଏ ।

**୭୨% ଜାପାନୀ ସୁଖୀ**

ଜାପାନର ପ୍ରଧାନମନ୍ତ୍ରୀଙ୍କ ଅନୁସନ୍ଧାନରୁ ଜଣାଯାଏ ଯେ, ଶତକଡ଼ା ୭୨ ଭାଗ ଜାପାନୀ କେବଳ ସନ୍ତୋଷରେ ରହୁଛନ୍ତି ।

**ବିଶ୍ୱର କ୍ଷୁଦ୍ରତମ ଟେଲିଭିଜନ**

ଜାପାନର କଣ୍ଟମଭ ଇଲେକ୍‌ଟ୍ରୋନିକ କମ୍ପାନୀ କ୍ଷୁଦ୍ରତମ ଟେଲିଭିଜନ ତାହାର କରିଛନ୍ତି । ବ୍ୟାଟେରୀ ସହିତ ଏହାର ଓଜନ ହେଉଛି ୨୦୦ ଗ୍ରାମ ।

**ପୃଥିବୀର ବୃହତ୍ତମ ବନ୍ଧ**

ଆମେରିକାର ଯୁକ୍ତରାଷ୍ଟ୍ରର କଲମ୍ବିଆ ନଦୀ ଉପରେ ନିର୍ମିତ 'ଗ୍ରାଣ୍ଡ କୌଲି ଡ୍ୟାମ' ହେଉଛି ବିଶ୍ୱରେ ବୃହତ୍ତମ ନଦୀବନ୍ଧ । ଏଥିରେ ୨୪ ନିୟୁତ ଟନ କଂକ୍ରିଟ ବ୍ୟବହୃତ ହୋଇଛି । ଏହାର ଉଚ୍ଚତା ୫୫୦ ଫୁଟ । ଏହି ବନ୍ଧର ଲମ୍ବ ହେଉଛି ୧୦ ମାଇଲ । ଏଥିରେ ୨୪ଟି ମୁଖ୍ୟ ଜେନେରେଟର୍ ରହିଛି ।

**୧୪୦ ୦୦୦ ଡଲାରରେ ନାକ ଇନସିଓର**

ବିଶିଷ୍ଟ ହାସ୍ୟରସ ଅଭିନେତା ଜିମି ଡୁରାଣ୍ଟଙ୍କର ୧୪୦୦୦୦ ଡଲାରରେ ନାକ ଇନସିଓର କରାହୋଇଛି ।

**ବିଶ୍ୱର ବିଭିନ୍ନ ଧର୍ମାବଲମ୍ବୀ**

| | | |
|---|---|---|
| ହିନ୍ଦୁ | — | ୪୦୦, ୦୦୦, ୦୦୦ |
| ମୁସଲମାନ | — | ୨୦୦, ୦୦୦, ୦୦୦ |
| ବୌଦ୍ଧ | — | ୨୪୪, ୦୦୦, ୦୦୦ |
| ଖ୍ରିଷ୍ଟିୟାନ | — | ୧, ୦୦୦, ୦୦୦, ୦୦୦ |
| ରୋମାନ୍ କ୍ୟାଥଲିକ୍ | — | ୪୨୪, ୦୦୦, ୦୦୦ |
| ପ୍ରୋଟେଷ୍ଟାଣ୍ଟ | — | ୩୨୪, ୦୦୦, ୦୦୦ |
| ପ୍ରାଚୀନ ମତାବଲମ୍ବୀ | — | ୯୨, ୦୦୦, ୦୦୦ |
| ତାଓଇନ୍ | — | ୩୦୪, ୦୦୦, ୦୦୦ |

**କୋଟିଏ ହଜାର ବର୍ଷ ତଳେ ଅନ୍ଧ ଯୁଗ**

ପୃଥିବୀର କୋଟିଏ ହଜାର ବର୍ଷ ତଳେ ମହାଜାଗତିକ ପରିବର୍ତ୍ତନ ପରିଦୃଷ୍ଟ ହୋଇଥିଲା । ପୃଥିବୀ ତା'ର କକ୍ଷ ପଥରେ ୩୬୦ ଦିନ ପରିବର୍ତ୍ତେ ୩୬୫ ଦିନରେ ଘୁରିଥିଲା । ଏହି ପରିବର୍ତ୍ତନ ଫଳରେ ପୃଥିବୀର ଅକ୍ଷ ଓଲଟା ଘୁରିଲା । ଏକସମୟରେ ଚାରୋଟି ସୂର୍ଯ୍ୟ ଉଦିତ ହେଲା । ପରିଣାମରେ ମାନବ ସଭ୍ୟତାର ନିଶ୍ଚିହ୍ନ ହୋଇଗଲା ପୃଥିବୀ ପୃଷ୍ଠରୁ ।

**ସର୍ବପ୍ରଥମ ମୁଦ୍ରିତ ପୁସ୍ତକ**

୧୯୦୦ ଖ୍ରୀଷ୍ଟାବ୍ଦରେ ତୁର୍କୀସ୍ଥାନ ଗୁମ୍ଫାରେ ପ୍ରାଚୀନତମ ପୁସ୍ତକ ବଜ୍ରମଣ୍ଡ ସୂତ୍ର (ବୌଦ୍ଧଧର୍ମ ପୁସ୍ତକ) ବୋଲି ଜଣାପଡ଼ିଛି । ଏହା ପାଞ୍ଚ ମିଟରର ଏବଂ ଏହାକୁ କାଷ୍ଠରେ ଛଅ ପୃଷ୍ଠା ଧରି ମୁଦ୍ରିତ କରାହୋଇଛି । ୮୬୮ ଖ୍ରୀଷ୍ଟାବ୍ଦରେ ୱାଙ୍ଗ ଚିଙ୍ଗ ଦ୍ୱାରା ଏହା ମୁଦ୍ରିତ ହୋଇଥିଲା । ତାଙ୍କର ପିତା ମାତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏହା ବିନା ମୂଲ୍ୟରେ ବିତରଣ କରାଯାଇଥିଲା ।

**ଆଲଫ୍ରେଡଙ୍କ ସିଂହାସନ ଆରୋହଣ**

ଆଲଫ୍ରେଡ୍ ୱାଣ୍ଟେଜ୍‌ଠାରେ ଜନ୍ମଗ୍ରହଣ କରିଥିଲେ । ଓ୍ୱେସେକ୍ସର ଏଥେଲ୍ ଉଲଫ୍‌ଙ୍କର ସେ ଥିଲେ ସର୍ବକନିଷ୍ଠ ସନ୍ତାନ । ଅଳ୍ପ ବୟସରେ ସେ ଭ୍ରାତା ଏଥେଲ୍-ରେଡଙ୍କୁ ଡାନେସ ସୈନ୍ୟବାହିନୀର ମୁକାବିଲା ଲାଗି ସାହାଯ୍ୟ କରି ଆସିଥିଲେ । ୮୭୧ ଖ୍ରୀଷ୍ଟାବ୍ଦରେ ସେ ଅସଡାଉନ୍ ଯୁଦ୍ଧ କ୍ଷେତ୍ରରେ ବିଜୟଲାଭ କଲେ । ସେହି ବର୍ଷ ତାଙ୍କର ଭ୍ରାତାଙ୍କର ମୃତ୍ୟୁ ହେବାରୁ ଆଲଫ୍ରେଡ ଓ୍ୱେସେକ୍ସର ରାଜା ହେଲେ । ଆଲଫ୍ରେଡ ୯୦୦ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କରିଥିଲେ ।

### ଏଙ୍ଗକୋର ଓ୍ୱାଟ୍ ମନ୍ଦିର

ବିଗତ ନଗର ହୋଇଥିବା ଯୋଗୁଁ ଏବଂ ମନ୍ଦିର ସବୁ ରହିଥିବା ହେତୁ ଏଙ୍ଗକୋର ବେଶ୍ ପରିଚିତ ଥିଲା ସବୁ ମହଲରେ । ଏହା ଜଙ୍ଗଲରେ ପରିପୂର୍ଣ୍ଣ ଏବଂ ଉତ୍ତର କାମ୍ବୋଡ଼ିଆ ପର୍ଯ୍ୟନ୍ତ ଜଙ୍ଗଲ ବିସ୍ତୃତ । ପନ୍ଦରହେ ଶତାବ୍ଦୀରେ ଲୁଟ୍‌ପାଟ ଫଳରେ ଏଙ୍ଗକୋର୍ ପୂରାପୂରି ବଦଳି ଯାଇଥିଲା ।

ନବମ ଶତାବ୍ଦୀରେ ଏଙ୍ଗକୋର ଥିଲା ଖମେରସ ରାଜ୍ୟର ରାଜଧାନୀ । ଏଙ୍ଗକୋର ଓ୍ୱାଟ୍ ହେଉଛି ଏକ ମନୋରମ ମନ୍ଦିର । ବୁଦ୍ଧଙ୍କୁ ଉପାସନା କରାଯିବା ପାଇଁ ଏହି ମନ୍ଦିର ନିର୍ମିତ ହୋଇଥିଲା । ରାଜଧାନୀରୁ ଏହାର ଦୂରତା ଅଢେଇ କିଲୋ ମିଟର ।

### ଚେସର ଆରମ୍ଭ

୯୫୦ ଖ୍ରୀଷ୍ଟାବ୍ଦରେ ଆରବୀୟ ଗ୍ରନ୍ଥକାର ମାସୁଦି ଚେସ୍ ସମ୍ପର୍କରେ ସର୍ବପ୍ରଥମେ ପୁସ୍ତକ ଲେଖିଥିଲେ ବୋଲି ଇତିହାସରୁ ଜଣାଯାଏ । ଚେସ୍ ହେଉଛି ଯେ ଆଧୁନିକ ଇଂରେଜୀର ସମକକ୍ଷ । ଚେକ୍‌ମେଟ୍ ଖେଳରେ ବ୍ୟବହୃତ ଥାଏ । ଏହାକୁ ସାହା ମ୍ୟାଟ୍ ବୋଲି ଆଖ୍ୟା ଦିଆଯାଏ । ଭାରତରେ କିନ୍ତୁ ଚେସ୍ ସର୍ବପ୍ରଥମେ ଆରମ୍ଭ କରାହୋଇଥିଲା ।

### ଓ୍ୱେଲସର ମଧ୍ୟଯୁଗୀୟ କବି

ଆଙ୍ଗ୍ଲୋ-ସାକ୍ସୋନ ଜାତିର ଅଧିବାସୀମାନେ କେଲଟିକ୍ ସମ୍ପ୍ରଦାୟକୁ ପଶ୍ଚିମକୁ ହଟାଇ ଦେଲେ । ଓ୍ୱେଲସରେ ଉନ୍ମାଦନା ସୃଷ୍ଟି କରାଯିବା ଭଳି ବହୁ ସଙ୍ଗୀତ ସେହି ସମୟରେ ରଚିତ ହୋଇଥିଲା । ଟେଲସିନ୍, ଏନିରିନ୍ ଏବଂ ଲଓ୍ୱାର୍ଚ୍ ହେନ୍ ହେଉଛନ୍ତି ମଧ୍ୟଯୁଗର କବି । ଏନିରିନ୍‌ଙ୍କର ଉଲ୍ଲେଖଯୋଗ୍ୟ କୃତୀ ହେଉଛି 'ଗୋଡୋଡ଼ନ' ।

### ସେଣ୍ଟ କୋଲମ୍ବାଙ୍କ ଆଇଓନା ଅବିଷ୍କାର

ହେବ୍ରିଡସ୍ ହେଉଛି ଆଇଓନାର ଏକ କ୍ଷୁଦ୍ର ଦ୍ୱୀପ । ସେଣ୍ଟ କୋଲମ୍ବା ଏହି ଦ୍ୱୀପରେ ପ୍ରଥମେ ପହଞ୍ଚି ଖ୍ରୀଷ୍ଟଧର୍ମର ପ୍ରଚାର କରାଇଥିଲେ । ଆଇଓନାରେ ଜଣେ ବିସୋପ୍ ମଧ୍ୟ ନିଯୁକ୍ତ ହେଲେ ।

### ମହମ୍ମଦଙ୍କ ଜନ୍ମ

ଖ୍ରୀଷ୍ଟାବ୍ଦ ୫୭୦ରେ ମହମ୍ମଦ ମକ୍‌କା ନଗରୀରେ ଜନ୍ମଲାଭ କରିଥିଲେ । ପାରମ୍ପରିକ ଧର୍ମବିଶ୍ୱାସରେ ସେ ସନ୍ତୁଷ୍ଟ ନହୋଇ ଧ୍ୟାନ ବଳରେ ଆଲ୍ଲାଙ୍କର ସନ୍ଧାନ ପାଇଲେ ।

ମହମ୍ମଦ ମକ୍କାରୁ ପଳାୟନ କରିବାକୁ ବାଧ୍ୟ ହୋଇଥିଲେ । ୬୨୨ ଖ୍ରୀଷ୍ଟାବ୍ଦରୁ ମୁସଲମାନମାନଙ୍କର ଅବ୍ଦ ପ୍ରଚଳିତ । ସେ ମଦିନାକୁ ଚାଲିଗଲେ ଏବଂ ସେଠାରେ ତାଙ୍କର ଶିଷ୍ୟମାନଙ୍କର ସଂଖ୍ୟା ମଧ୍ୟ ବୃଦ୍ଧି ପାଇଥିଲା । ମହମ୍ମଦ ମକ୍କା ବିରୁଦ୍ଧରେ ଧର୍ମ ଯୁଦ୍ଧର ଡାକରା ଦେଲେ ଏବଂ ମକ୍କାକୁ ଯୁଦ୍ଧରେ ପରାଜିତ କଲେ । ୬୨୮ ଖ୍ରୀଷ୍ଟାବ୍ଦରେ ଶାନ୍ତି ଫେରି ଆସିଥିଲା । ପରେ ପରେ ଧର୍ମ ପ୍ରଚାରକମାନେ ଆରବ ଭ୍ରମଣରେ ଲାଗିପଡ଼ିଲେ ।

୬୩୨ ଖ୍ରୀଷ୍ଟାବ୍ଦରେ ମହମ୍ମଦ ଶେଷଥର ପାଇଁ ମକ୍କା ଯାତ୍ରା କରିଥିଲେ ଏବଂ ଏହାର ଅଳ୍ପ କାଳ ମଧ୍ୟରେ ସେ ପରଲୋକ ଗମନ କଲେ । ତାଙ୍କର ପ୍ରବର୍ତ୍ତିତ ଧର୍ମର ନାମ ହେଉଛି ଇସଲାମ ଏବଂ କୋରାନ ହେଉଛି ଇସଲାମ ଧର୍ମର ପୁସ୍ତକ ।

### ସେଣ୍ଟ ଅଗଷ୍ଟାଇନ୍‌ଙ୍କ କାଥେଡ୍ରାଲ୍

ସେଣ୍ଟ ଅଗଷ୍ଟାଇନ୍ ହେଉଛନ୍ତି ଜଣେ ଧର୍ମଯାଜକ । ୫୯୭ ଖ୍ରୀଷ୍ଟାବ୍ଦରେ ସେ ପୋପ୍ ଗ୍ରେଗୋରି-୧ଙ୍କ ନିର୍ଦ୍ଦେଶରେ ଇଂଲଣ୍ଡକୁ ଯାଇଥିଲେ । କେଣ୍ଟର ରାଜା ଏଥେଲ୍‌ବେର୍ଟ ସେଣ୍ଟ ଅଗଷ୍ଟାଇନ୍‌ଙ୍କ ଦଳକୁ କାଣ୍ଟେରବରି ଠାରେ ରହିବା ବ୍ୟବସ୍ଥା କରାଇଲେ । ସେ କାଥେଡ୍ରାଲ ସମ୍ପର୍କରେ ଏକ ପୁସ୍ତକ ୬୦୨ ଖ୍ରୀଷ୍ଟାବ୍ଦରେ ରଚନା କରିଥିଲେ । ତାଙ୍କର ପରଲୋକ ଘଟିଲା ୬୦୪ ଖ୍ରୀଷ୍ଟାବ୍ଦରେ ।

### ଅଫାଙ୍କର ଡାୟକ୍

୭୫୭ ଖ୍ରୀଷ୍ଟାବ୍ଦରେ ଅଫା ମେର୍ସିଆ ରଜା ହେଲେ ଏବଂ ସିଂହାସନ ଆରୋହଣ ପରେ ପରେ ଅପହୃତ ରାଜ୍ୟ ପୁନର୍ଗଠନ କରଇଲେ । ସେ ବ୍ରିଟେନର ଦକ୍ଷିଣାଂଶ ଦଖଲ କରି ନେଇଥିଲେ । ୭୮୨ ଓ ୭୮୩ ଖ୍ରୀଷ୍ଟାବ୍ଦରେ ଉତ୍ତର ସୀମାନ୍ତ ରାଜ୍ୟଗୁଡ଼ିକର ଆକ୍ରମଣର ପ୍ରତିରୋଧ କରିବା ପାଇଁ ଏକ ପ୍ରାଚୀର ନିର୍ମାଣ କରାଇଥିଲେ । ଏହାକୁ ଅଫାଙ୍କର ଡାୟକ୍ ବୋଲି କୁହାଯାଇ ଥାଏ ।

### ଜଳ ଦସ୍ୟୁମାନଙ୍କର ପ୍ରଥମ ବ୍ରିଟେନ୍ ଆକ୍ରମଣ

୭୯୩ ଖ୍ରୀଷ୍ଟାବ୍ଦରେ ଜଳଦସ୍ୟୁମାନେ ପ୍ରଥମ ଥର ପାଇଁ ବ୍ରିଟେନ ଆକ୍ରମଣ କରିଥିଲେ ଏବଂ ବ୍ରିଟେନରେ ରକ୍ତର ସ୍ରୋତ ବହିଗଲା । ଏହି ଜଳଦସ୍ୟୁମାନେ ଡେଙ୍ଗା ଏବଂ ଦାଢ଼ୁଆ ଯୋଦ୍ଧା ଥିଲେ । ଏହିମାନେ ଦକ୍ଷିଣରେ ବ୍ୟାବିଲୋନିୟମଠାରୁ ଉତ୍ତରରେ ରୁଷିଆ ପର୍ଯ୍ୟନ୍ତ ଭ୍ରମଣ କରୁଥିଲେ । ନରୱେର ଓସଲୋଠାରେ ଜଳଦସ୍ୟୁ ନୌକା-ଗୃହରେ ସେ ସମୟର ଗୋକଷ୍ଟାଡ, ଓସେବର୍ଗ ଏବଂ ଟିଉନ୍ ନାମକ ଜାହାଜଗୁଡ଼ିକ ସୁରକ୍ଷିତ ହୋଇ ରହିଛି ।

## ଗ୍ରୀନ୍‌ଲ୍ୟାଣ୍ଡରେ ଇରିକ୍

ଆଇସଲାଣ୍ଡରେ ଭିକିଙ୍ଗମାନେ ବସବାସ କରିବାରେ ଲାଗିଲେ । ନରଓଏର କୃଷକ ଓ କେଉଟମାନଙ୍କର ବାସସ୍ଥଳରେ ତାହା ପରିଣତ ହେଲା । ଏହି ଜାତିମାନଙ୍କ ମଧ୍ୟରେ ଦଳେ ଲୋହିତ ଇରିକ୍ ରହିଥିଲେ । ଦ୍ୱନ୍ଦ୍ୱ ହେତୁ ଜଣେ ଇରିକ୍ ଦୁଇ ବ୍ୟକ୍ତିଙ୍କୁ ହତ୍ୟା କରିଥିବାରୁ ତିନିବର୍ଷ ପାଇଁ ଶାସ୍ତି ଭୋଗିଲେ । ସେ ନୈଋତ କିଲୋମିଟର ଦୂରବର୍ତ୍ତୀ ଏକ ବିସ୍ମୟଜନକ ସ୍ଥାନକୁ ଗଲେ । ସେଠାରେ ଏହି ବ୍ୟକ୍ତି ତିନି ବର୍ଷକାଳ ନିର୍ବାସନ ଦଣ୍ଡ ଭୋଗିଲେ । ସେ ଏହି ସ୍ଥାନର ନାମ କଲେ ଗ୍ରୀନ୍‌ଲ୍ୟାଣ୍ଡ ।

## କ୍ୟାପେଟ ସାମ୍ରାଜ୍ୟର ପ୍ରତିଷ୍ଠା

ଫ୍ରାନ୍ସ ରାଜ୍ୟ ୮୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚାର୍ଲ୍‌ମ୍ୟାଗ୍ନେଙ୍କ ପୂର୍ବ ପୁରୁଷଙ୍କ ଦ୍ୱାରା ଶାସିତ ହୋଇ ଆସିଥିଲା । ୯୮୭ ଖ୍ରୀଷ୍ଟାବ୍ଦରେ ହିଉଗ୍ କ୍ୟାପେଟ୍ ସିଂହାସନ ଆରୋହଣ କଲେ । ସେ ହେଉଛନ୍ତି କ୍ୟାପେଟ୍ ସାମ୍ରାଜ୍ୟର ପ୍ରତିଷ୍ଠାତା ।

## ମାଲଡୋନ ଯୁଦ୍ଧ

ଇଂଲଣ୍ଡର ସମ୍ରାଟ ଏଡୱାର୍ଡଙ୍କୁ କୋର୍‌ଫି ଦୁର୍ଗରେ ହତ୍ୟା କରାଯାଇଥିଲା । ତାଙ୍କର ବିମାତା ନିଜର ପୁତ୍ର ଏଥେଲରେଡ୍‌ଙ୍କୁ ସମ୍ରାଟ କରିବାକୁ ଚାହିଁଥିଲେ । ଏଡୱାର୍ଡଙ୍କ ପରଲୋକ ଫଳରେ ଦଶବର୍ଷ ବୟସ୍କ ଏଥେଲରେଡ୍ ସିଂହାସନ ଆରୋହଣ କଲେ । ସେ ଚଳିଶ ବର୍ଷ କାଳ କ୍ଷମତାରେ ରହିଥିଲେ ।

ଇଂଲଣ୍ଡ ଜଟିଳ ସମସ୍ୟାର ସମ୍ମୁଖୀନ ହେଲା । ଡିନାମାରମାନେ ଏହାର ସୁଯୋଗ ନେଲେ । ଇଂଲଣ୍ଡ ଜଣେ ଯୁବକ ରାଜା ଅଥଚ ଦୁର୍ବଳ ଶାସକଙ୍କ ଅଧୀନରେ ଶାସିତ ହେଉଥିଲା । ଏଥେଲରେଡ୍‌ଙ୍କ ଶାସନ କାଳରେ ତିନିଥର ଡିନାମାର୍‌ମାନେ ଆକ୍ରମଣ କରିଥିଲେ ।

୯୯୧ ଖ୍ରୀଷ୍ଟାବ୍ଦରେ ଡିନାମାର୍‌ମାନେ ଲୁଣ୍ଠନ ଉଦ୍ୟମ କରିଦେଲେ । ମାଲଡୋନ ଯୁଦ୍ଧ କ୍ଷେତ୍ରରେ ଇଂଲଣ୍ଡର ସୈନ୍ୟ ସହ ସେମାନଙ୍କ ଭେଟ ହେଲା ଏବଂ ସେମାନେ ପରସ୍ପର ବିରୁଦ୍ଧରେ ଲାଗିଲେ ।

## ରୋଲାଣ୍ଡଙ୍କ ମୃତ୍ୟୁ

ବୀର ରୋଲାଣ୍ଡଙ୍କୁ କେନ୍ଦ୍ରକରି ଫ୍ରାନ୍ସରେ ମହାକାବ୍ୟ ରଚିତ ହୋଇଅଛି । ଐତିହାସିକ ଇନହାର୍ଡ ପୃଷ୍ଠ-ପୋଷକ ଚାର୍ଲ୍‌ମ୍ୟାଗ୍ନେଙ୍କ ଜୀବନ କାହାଣୀ ରଚନା

କରିଥିଲେ ୮୨୦ ଖ୍ରୀଷ୍ଟାବ୍ଦରେ । ସେହି ପୁସ୍ତକରେ ରୋଞ୍ଚେସ୍ ଭେଲିସଠାରେ ରୋଲାଣ୍ଡ-ଙ୍କର ପରଲୋକ ହୋଇଥିବା ବିଷୟ ବର୍ଣ୍ଣିତ ହୋଇଅଛି ।

ଚାର୍ଲିମାଗ୍ନେ ୭୭୮ ଖ୍ରୀଷ୍ଟାବ୍ଦରେ ସ୍ପେନ ଆକ୍ରମଣ କଲେ । ସେ ପାମ୍ପଲୋନା ଅଧିକାର କରିନେଲେ, ମାତ୍ର ସାର୍‌ଗୋସା ଦଖଲ କରିପାରିଲେ ନାହିଁ । ରାଇନରେ ସାକ୍‌ସନମାନଙ୍କ ବିଦ୍ରୋହ ସମ୍ପର୍କରେ ସମ୍ବାଦ ଆସିବାରୁ ବାଧ୍ୟହୋଇ ଫ୍ରାନସ ଫେରିଗଲେ । ଚାର୍ଲିମାଗ୍ନେଙ୍କର ସୈନ୍ୟ ଦଳର ପଶ୍ଚାଦ ଭାଗ ରକ୍ଷକ ସୈନ୍ୟଗଣ ମୁଖ୍ୟ ସୈନ୍ୟ ଦଳରୁ ସମ୍ପର୍କ ଚ୍ଛିନ୍ନ ହୋଇଗଲେ ଶତ୍ରୁପକ୍ଷର ସୈନ୍ୟ ଦ୍ୱାରା

ଏହି ମହାକାବ୍ୟରେ ନାଟକୀୟ କାହାଣୀ ସାରାସିନ ସୈନ୍ୟ ଦଳଙ୍କୁ କେନ୍ଦ୍ର କରି ଚିତ୍ତାକର୍ଷକ ହୋଇପାରିଛି । ରୋଞ୍ଚେସ ଭେଲିସ୍ ଯୁଦ୍ଧ କ୍ଷେତ୍ରରେ ଅଲିଭର ଏବଂ ରୋଲାଣ୍ଡଙ୍କ ବନ୍ଧୁତାହିଁ ଜନଶ୍ରୁତି ହୋଇ ରହିଛି ।

## ଚୀନରେ ପ୍ଲାଷ୍ଟିକ୍ ଅସ୍ତ୍ରୋପଚାର

ସମ୍ପ୍ରତି ଚୀନରେ ପ୍ଲାଷ୍ଟିକ୍ ଅସ୍ତ୍ରୋପଚାର ସଂଖ୍ୟା ବୃଦ୍ଧି ପାଇଛି । ପ୍ରଥମେ ଏହାକୁ ବାତିଲ କରି ଦିଆଯାଇଥିଲା । ଏବେ ପୁଣି ଏହି ଅସ୍ତ୍ରୋପଚାର କରାଯାଉ ଅଛି । ପ୍ଲାଷ୍ଟିକ ଅସ୍ତ୍ରୋପଚାର ଦ୍ୱାରା ଚର୍ମରେ ରକ୍ତକୋଷ ନଷ୍ଟ ହୁଏ ନାହିଁ କିମ୍ବା ବ୍ୟାକ୍‌ଟିରିଆ ଦ୍ୱାରା କ୍ଷତସ୍ଥାନ ସଂକ୍ରମିତ ହୁଏ ନାହିଁ ।

## ପବିତ୍ର ରୋମୀୟ ସମ୍ରାଟ ଚାର୍ଲସ

୮୦୦ ଖ୍ରୀଷ୍ଟାବ୍ଦର ବଡ଼ ଦିନଟା ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ଫ୍ରାଙ୍କର ରାଜା ଚାର୍ଲସ ପୋପଲିଓ ତୃତୀୟଙ୍କ ଦ୍ୱାରା ମୁକୁଟ ମଣ୍ଡିତ ହୋଇଥିଲେ । ଏହାପରେ ତାଙ୍କୁ ଚାର୍ଲସ ଦି ଗ୍ରେଟ' ଆଖ୍ୟା ଦିଆଗଲା । ଚାର୍ଲସ(ଚାର୍ଲମାଗ୍ନେ) ଚାର୍ଲସ ମାର୍ଟେଲଙ୍କର ନାତି । ସେ ସାରାସେନ୍‌ଙ୍କୁ ପରାଜିତ କରିଥିଲେ । ତାଙ୍କର ପିତା ପେପିନ୍ ମେରୋ-ଭିଞ୍ଜିଆନ ରାଜା ଚାଇଲଡେରିକ୍‌ଙ୍କ ରାଜ୍ୟ ଫ୍ରାଙ୍କ୍ ଅବରୋଧ କରି ରଖିଥିଲେ । ପେପିନ୍‌ଙ୍କର ୭୬୮ ଖ୍ରୀଷ୍ଟାବ୍ଦରେ ପରଲୋକ ଘଟିବାରୁ ସାମ୍ରାଜ୍ୟ ଦୁଇ ଭାଗରେ ବିଭକ୍ତ ହୋଇଗଲା । ତାଙ୍କର ଦୁଇପୁତ୍ର ଚାର୍ଲସ ଏବଂ କାର୍ଲୋମ୍ୟାନ ସାମ୍ରାଜ୍ୟର ଦୁଇ ଅଂଶ ଶାସନ କରିଥିଲେ, କାର୍ଲୋମ୍ୟାନ୍ ତିନି ବର୍ଷ ପରେ ପରଲୋକ ଗମନ କରିବା ଫଳରେ ସମଗ୍ର ଫ୍ରାନସର ସମ୍ରାଟ ହେଲେ ଚାର୍ଲସ ।

## ଇଙ୍ଗ୍‌ଲାଣ୍ଡ ଇଂଲଣ୍ଡର ଅଧୀଶ୍ୱର ଭାବେ ସ୍ୱୀକୃତ

ୱେସେକ୍‌ସର ସ୍ୟାନିଓଲଫ୍ ୬୮୪ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ ।

କେନେଥ୍‌ର ପୁଅ ଇଡ୍‌ବାର୍ଟ ସିଂହାସନର ଉତ୍ତରାଧିକାରୀ ଭାବେ ନିଜର ଦାବୀ ଉପସ୍ଥାପିତ କରିଥିଲେ । ତାଙ୍କର ପ୍ରତିଦ୍ୱନ୍ଦୀ ବେରଟିକ୍ ସିଂହାସନ ଆରୋହଣ କଲେ । ଇଡବାର୍ଟ ତାଙ୍କୁ ହାନି ଆଶଙ୍କା କରି ସ୍ଥାନାନ୍ତର ଗମନ କରିଥିଲେ । ୮୦୨ ଖ୍ରୀଷ୍ଟାବ୍ଦରେ ବେରଟିକ୍‌ଙ୍କର ପରଲୋକ ହେବାରୁ ଇଡବାର୍ଟ ଓ୍ୱେସେକ୍ସ ଫେରି ଆସିଲେ ଏବଂ ସିଂହାସନ ଆରୋହଣ କଲେ । ସେ ୮୨୮ ଖ୍ରୀଷ୍ଟାବ୍ଦରେ ମର୍ସିଆ ରାଜାଙ୍କୁ ପରାସ୍ତ କରିଥିଲେ । ପରଶେଷରେ ତାଙ୍କୁ 'ଓ୍ୱେଲଡର ଅଫ ବ୍ରିଟେନ' ଉପାଧିରେ ଭୂଷିତ କରାଗଲା । ଇଡ୍‌ବାର୍ଟ ୮୩୯ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ ।

## ସ୍କଟଲାଣ୍ଡର କିନେଥ୍-୧ ଙ୍କର ସିଂହାସନ ଆରୋହଣ

ଏଲ୍‌ପିନ୍‌ଙ୍କର ପୁତ୍ର କିନେଥ ହେଉଛନ୍ତି ସ୍କଟଲ୍ୟାଣ୍ଡର ପ୍ରଥମ ରାଜା । ୮୩୨ ଖ୍ରୀଷ୍ଟାବ୍ଦରେ ସେ ସ୍କଟଲାଣ୍ଡ ଅଧିବାସୀଙ୍କର ରାଜା ହୋଇଥିଲେ । ତାଙ୍କର ଜେଜେମା ପିକସ୍ ରାଜଜେମା ଥିବାରୁ ସେ ମଧ୍ୟ ପିକସ୍ ସିଂହାସନ ଆରୋହଣ କରି ପାରିଥିଲେ । ସେ ସମୟରେ ସ୍କଟଲାଣ୍ଡ ପିକସ୍ ସ୍କଟସ ଦୁଇଭାଗରେ ବିଭକ୍ତ ହୋଇଥିଲା । ଉଭୟେ ଉଭୟଙ୍କର ବିରୁଦ୍ଧରେ ଯୁଦ୍ଧ ଚଳାଇଲେ । ୮୪୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଥିଲା । ପିକସ୍ ରାଜା ଏବଂ ତାଙ୍କର ସୈନ୍ୟମାନଙ୍କର ପରାଜୟ ଘଟିଲା ଯୁଦ୍ଧ କ୍ଷେତ୍ରରେ । ଫଳରେ ସ୍କଟଲାଣ୍ଡର ରାଜା ହେଲେ କିନେଥ । ଛଅଟି କାରଣରୁ ସେ ନର୍ଥ ଉମ୍ବ୍ରିଆ ଆକ୍ରମଣ କରିଥିଲେ ।

## ଜିମ୍ବାୱେର ଆକ୍ରୋପୋଲିସ୍

ତ୍ରୟୋଦଶ ଶତକରେ ଦକ୍ଷିଣ କେନ୍ଦ୍ରୀୟ ଆଫ୍ରିକାର ଆଦିମ ଅଧିବାସୀମାନଙ୍କ ମଧ୍ୟରୁ ବଣ୍ଟୁ ଉପଜାତି ବିଚ୍ଛିନ୍ନ ହୋଇଗଲେ । ସେମାନେ ଦକ୍ଷିଣ ରୋଡେସିଆରେ ବସତି ସ୍ଥାପନ କଲେ । ତାହାର ନାମକରଣ ଜିମ୍ବାୱେ ହୋଇଗଲା । ସେଠାରେ ବହୁ ସଂଖ୍ୟାରେ ପ୍ରସ୍ତର କୋଠା ରହିଥିବାର ସେମାନେ ଲକ୍ଷ୍ୟ କରିଥିଲେ । ୮୫୦ ଖ୍ରୀଷ୍ଟାବ୍ଦରେ ସର୍ବୋଚ୍ଚ ଦୁର୍ଗ ନିର୍ମିତ ହୋଇଥିଲା । ଏହି ଦୁର୍ଗର ଉଚ୍ଚତା ହେଉଛି ନଅ ମିଟର । ଏହାର ନିର୍ମାଣ ପ୍ରାଚ୍ୟ ବଣିକଙ୍କ ଦ୍ୱାରା କରାଯାଇଥିଲା ।

## ବ୍ରିଟେନରେ ସର୍ବବୃହତ୍ ପ୍ରଦର୍ଶନୀ

ବ୍ରିଟେନରେ ଏକବିଂଶ ଶତାବ୍ଦୀ ପାଳନ କରିବା ଲାଗି ବିପୁଳ ଅର୍ଥ ବ୍ୟୟରେ ପ୍ରଦର୍ଶନୀଟିଏ କରାଯାଉଛି । ସମଗ୍ର ବିଶ୍ୱରେ ଏହା ହେଉଛି ସର୍ବପ୍ରଥମ ପ୍ରଦର୍ଶନୀ । ଏହାର ଆୟୋଜକ ହେଉଛନ୍ତି ଇଭନ ଷ୍ଟିଡମ୍ୟାନ୍ । ପ୍ରଦର୍ଶନୀ ୨୦୦୧ ମସିହା ମଇ

ପଠିକାରୁ ଲଣ୍ଡନ ତଥା ଅନ୍ୟ କେତେ ସ୍ଥାନରେ ଆରମ୍ଭ ହେବ ଏବଂ ଏହି ପ୍ରଦର୍ଶନୀ ନଅ ମାସ ଧରି ଚାଲିବ ।

### ଲିଣ୍ଡିସ ଫାର୍ନ ଏବଂ ତାହାର ସୁସମାଚାର

ନର୍ଥ ଉମ୍ବରଲାଣ୍ଡ ଉପକୂଳରୁ ତିନି କିଲୋମିଟର ଦୂରରେ ଲଣ୍ଡିସ୍ ଫାରନ ଦ୍ୱୀପ ଅବସ୍ଥିତ । ଏହା ହେଉଛି ସେଣ୍ଟ ଅଇଡାନ୍‌ଙ୍କର ବାସସ୍ଥାନ । ସେଣ୍ଟ ଆଇଡାନ୍ ୬୩୫ ଖ୍ରୀଷ୍ଟାବ୍ଦରେ ଆଇଓନାରୁ ଆସି ସେଠାରେ ଆଶ୍ରମ ସ୍ଥାପନ କରିଥିଲେ । ଖ୍ରୀଷ୍ଟଧର୍ମ ପ୍ରଚାରର ଉଦ୍ୟମ ଚଳାଇଥିଲେ । ଅଇଡାନ୍ ୬୫୧ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କଲେ । ତାଙ୍କର ଉତ୍ତରାଧିକାରୀ ଥିଲେ ସେଣ୍ଟ କୁଥବର୍ଥ । କୁଥବର୍ଥ ନିଜର ମୃତ୍ୟୁ ପର୍ଯ୍ୟନ୍ତ ୬୮୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବିସୋପ୍ ରହିଥିଲେ । ସେ ନର୍ଥ ଉମ୍ବ୍ରିଆ ଭ୍ରମଣ କରି ବହୁ ନର ନାରୀଙ୍କୁ ଖ୍ରୀଷ୍ଟଧର୍ମରେ ଅନୁପ୍ରାଣିତ କରାଇଥିଲେ । ୭୦୦ ଖ୍ରୀଷ୍ଟାବ୍ଦରେ ଧର୍ମାନୁଷ୍ଠାନ ଗୁଡ଼ିକ ଦ୍ୱାରା ସୁ-ସମାଚାରର ବ୍ୟବସ୍ଥା ହୋଇଥିଲା । ଏହାକୁ ଲଣ୍ଡିସ୍ ଫାର୍ନ ସୁସମାଚାର ବୋଲି କୁହାଯାଇ ଥାଏ । ୮୭୫ ଖ୍ରୀଷ୍ଟାବ୍ଦରେ ଭିକିଙ୍ଗ୍‌ମାନେ ଏହି ଦ୍ୱୀପ ଆକ୍ରମଣ କରିବାରୁ ସନ୍ଥ ବ୍ୟକ୍ତିମାନେ ପଳାୟନ କଲେ । ସେମାନେ ସେଣ୍ଟ କୁଥ୍‌ବେର୍ଟଙ୍କର ଶରୀର ଏବଂ ଲଣ୍ଡିସ ଫାର୍ନ-ସୁସମାଚାର ନିଜ ସଙ୍ଗରେ ନେଇଯାଇଥିଲେ ।

### ବୀର ବିଓଉଲଫ୍

ଇଂରେଜୀ ଭାଷାର ପ୍ରାଚୀନ କାବ୍ୟରେ ବୀର ବିଓଉଲଫ୍ ଥିଲେ ଜଣେ ମହାନ ବୀର । ସେ ଏକ ନିଷ୍ଠୁର ଦାନବ ଓ ସର୍ପ (ଡ୍ରାଗନ) ସହିତ ଲଢ଼ାଇ କରିଥିଲେ । ବୀର ବିଓଉଲଫ୍‌ଙ୍କ ସମ୍ପର୍କରେ ଏକ ମହାକାବ୍ୟ ବିଗତ ୭୨୫ ଖ୍ରୀଷ୍ଟାବ୍ଦରେ ରଚନା କରାଯାଇଥିଲା ।

### ବିଡ଼ିଙ୍କର ଇତିହାସ

ପ୍ରାଚୀନ ଇଂରେଜ ଐତିହାସିକମାନଙ୍କ ମଧ୍ୟରେ ବିଡ଼ ହେଉଛନ୍ତି ଅନ୍ୟତମ । ସେ ଶୈଶବରେ ଓ୍ୱେରମାଉଥ୍ ଆଶ୍ରମକୁ ଯାଇଥିଲେ । ପରେ ପରେ ଜାରୋ ଆଶ୍ରମରେ ଉପସ୍ଥିତ ହୋଇଥିଲେ । ସେ ଅସାଧାରଣ ବୁଦ୍ଧିସମ୍ପନ୍ନ ବିଦ୍ୟାର୍ଥୀ ଥିଲେ । ସେ ଏକ 'ସ୍ରେଥିଷ୍ଟିକାଲ ହିଷ୍ଟ୍ରି ଅଫ ଦି ଇଂଲିଶ ନେସନ' ରଚନା କରିଥିଲେ । ୭୩୫ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହୋଇଥିଲା ।

### ଆଇରିଶ୍ ବୁକ୍ ଅଫ କେଲସ୍

ଅଷ୍ଟମ ଶତାବ୍ଦୀରେ ଅନେକଗୁଡ଼ିଏ ହସ୍ତଲିଖିତ (ପାଣ୍ଡୁଲିପି) ପ୍ରସ୍ତୁତ ହୋଇ

ପାରିଥିଲା । ଏଗୁଡ଼ିକ ମଧ୍ୟରେ ଲିଣ୍ଡିସ୍‌ଫାର୍ନ ସୁ-ସମାଚାର ଓ ଅଲିଭିସ୍ ବୁକ୍ ଅଫ ଡୁରୋଓ ହେଉଛି ଉଲ୍ଲେଖଯୋଗ୍ୟ । ମାତ୍ର ପ୍ରାଚୀନ କାଳର ଖ୍ରୀଷ୍ଟିୟ କଳାର ସ୍ମାରକୀ ହେଉଛି 'ଅଲିଭିସ୍ ବୁକ୍ ଅଫ୍ କେଲ୍' । ଏହାର ପାଣ୍ଡୁଲିପି ଲେଖାହୋଇଥିଲା ଲାଟିନ୍ ଭାଷାରେ । କେଲଟିକ୍ ଚିତ୍ରସବୁ ଏଥିରେ ସ୍ଥାନ ପାଇଛି ।

**ଧୂଆଁ ଟାଣିବା ବିପଜ୍ଜନକ**

ଧୂଆଁ ମାରୁଥିବା ଲୋକେ ସାଧାରଣତଃ ଅନ୍ୟମାନଙ୍କ ତୁଳନାରେ ଅଧିକ ସଂଖ୍ୟାରେ ହୃଦ୍‌ରୋଗ ଓ ରକ୍ତଚାପର ସମ୍ମୁଖୀନ ହୋଇଥାନ୍ତି ବୋଲି ବ୍ରିଟିଶ ମେଡ଼ିକାଲ ଜର୍ଣ୍ଣାଲରେ ପ୍ରକାଶ ପାଇଛି । ଧୂଆଁ ମାରୁଥିବା ବ୍ୟକ୍ତିମାନେ ବହୁମୂତ୍ର ଓ ଗଣ୍ଠିବାତ ପରି କେତେକ ରୋଗରେ ଆକ୍ରାନ୍ତ ହୋଇଥାନ୍ତି ।

**ବିଶ୍ୱରେ ତୈଳ ଉତ୍ପାଦନ**

ସମ୍ପ୍ରତି ବିଶ୍ୱରେ ଦୈନିକ ତୈଳ ଉତ୍ପାଦନର ପରିମାଣ ହେଉଛି ୫ କୋଟି ୮୦ ଲକ୍ଷ ବ୍ୟାରେଲ୍ । ପାଞ୍ଚ ବର୍ଷ ତଳେ ଦୈନିକ ୬ କୋଟି ୬୦ ଲକ୍ଷ ବ୍ୟାରେଲ୍ ତୈଳ ଉତ୍ପାଦିତ ହେଉଥିଲା ।

**ସାଙ୍ଗ ସାମ୍ରାଜ୍ୟର ପ୍ରତିଷ୍ଠା**

ସାଙ୍ଗ ସାମ୍ରାଜ୍ୟ ଚୀନକୁ ପ୍ରାୟ ସତିଶହ ବର୍ଷ କାଳ ଶାସନ କରି ଆସିଥିଲା । ଏହି ସାମ୍ରାଜ୍ୟର ପତନ ହେଲା ୨୨୦ ଖ୍ରୀଷ୍ଟାବ୍ଦରେ । ଉତ୍ତରରୁ ନୋମାଡମାନେ ଆକ୍ରମଣ କଲେ ଏବଂ ପରବର୍ତ୍ତୀ ଚାରି ଶତାବ୍ଦୀ କାଳ ଶକ୍ତିଶାଳୀ ସରକାର ରହିଲା ନାହିଁ ।

୬୧୮ ଖ୍ରୀଷ୍ଟାବ୍ଦରେ ସାଙ୍ଗ ସାମ୍ରାଜ୍ୟ କ୍ଷମତାକୁ ଆସିଲା । ସେହିଦିନଠାରୁ ଦେଶ ବୃହତ୍ତମ ହେଲା ଏବଂ ଅଗ୍ରଗତି ମଧ୍ୟ ହେଲା । ସାଙ୍ଗ ସାମ୍ରାଜ୍ୟର ବିରୋଧୀମାନେ ସୀମାନ୍ତ ପ୍ରଦେଶରେ ରାଜ୍ୟବୃଦ୍ଧି କରିବା ପାଇଁ ରହୁଥିଲେ । ପରବର୍ତ୍ତୀ ତିନି ଶତାବ୍ଦୀ ଧରି ସାଙ୍ଗ ଶାସନକୁ ଚୀନ୍‌ର ସୁବର୍ଣ୍ଣ ଯୁଗ ବୋଲି କୁହାଯାଏ । ସାଙ୍ଗ ସାମ୍ରାଜ୍ୟର ସର୍ବଶ୍ରେଷ୍ଠ ସମ୍ରାଟ ଲି ଲୁଙ୍ଗ୍-ଚିଙ୍ଗ୍ 'ସ୍ୱର୍ଗର ପୁତ୍ର' ବୋଲି କୁହାଯାଉଥାଏ । ତାଙ୍କ ଶାସନ କାଳରେ କଳାର ବିଶେଷ ଉନ୍ନତି ସାଧିତ ହୋଇଥିଲା । ସେ ନୃତ୍ୟ, ବାଦ୍ୟ ଓ ସଙ୍ଗୀତ ବିଦ୍ୟାଳୟମାନ ପ୍ରତିଷ୍ଠା କରାଇଥିଲେ । ସେ ବୈଜ୍ଞାନିକ ସମସ୍ୟାପ୍ରତି ନଜର ଦେଉଥିଲେ । ସେ ବିଶ୍ୱର ସର୍ବପ୍ରଥମ ଥର ପାଇଁ ବିନା କ୍ଷୌରରେ ପୋଲ କରିବା ପାଇଁ ଅନୁମତି ଦେଇଥିଲେ ।

**ମୁସଲମାନଙ୍କ ଦ୍ୱାରା ଜେରୁଜେଲମ ଅଧିକାର**

ମହମ୍ମଦଙ୍କ ମଧ୍ୟରେ ତାଙ୍କର ଅନୁଗାମୀମାନେ ରୋମାନ ସାମ୍ରାଜ୍ୟ ଠାରୁ ଏକ

ବୃହତ୍ ପ୍ରାଚୀନ ସାମ୍ରାଜ୍ୟକୁ ଜୟ କରିନେଲେ । ମୁସଲମାନଙ୍କର ପ୍ରଥମ ଶ୍ରେଷ୍ଠ ଯୋଦ୍ଧା ଥିଲେ କାଲିଫ ଓମର । ସେ ୬୩୪ ଖ୍ରୀଷ୍ଟାବ୍ଦରେ କ୍ଷମତାସୀନ ହେଲେ । ଖ୍ରୀଷ୍ଟିୟାନ ନଗର ଜେରୁଜେଲମ ହେଉଛି ତାଙ୍କର ସର୍ବପ୍ରଥମ ବିଜୟର ସ୍ୱାକ୍ଷର । ଜେରୁଜେଲମର ବାସିନ୍ଦାମାନେ ଚାରିମାସ କାଳ ସଂଗ୍ରାମ ଚଳାଇଲେ । ସେମାନେ ଓମାରଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ । ଓମର ୪୪୪ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ବରଣ କରିଥିଲେ । ମୁସଲମାନମାନେ କନଷ୍ଟାଣ୍ଟିନୋପଲ ଅବରୋଧ କରି ରଖିଲେ । କାର୍ଥେଜ ଓ ସ୍ପେନକୁ ଘେରାଉ କରିଥିଲେ । ୭୩୨ ଖ୍ରୀଷ୍ଟାବ୍ଦରେ ଚାର୍ଲସ ମାର୍ଟେଲ ଯୁଦ୍ଧରେ ଖ୍ରୀଷ୍ଟିୟ ରାଜ୍ୟ ଗୁଡ଼ିକୁ ରକ୍ଷା କରିଥିଲେ ।

**ଚୀନରେ ମୁଦ୍ରଣ ଯନ୍ତ୍ରର ଉଦ୍ଭାବନ**

ଚୀନରେ ଏହି ସମୟରେ ମୁଦ୍ରଣ ସମ୍ପର୍କରେ ସବୁଠାରୁ ଆକର୍ଷଣୀୟ ଉଦ୍ଭାବନ ହୋଇଥିଲା । ଟାଙ୍ଗ ସାମ୍ରାଜ୍ୟର ଶାସନ କାଳରେ ଏହି ଦିଗରେ ହିଁ ବିଶେଷ ଅଗ୍ରଗତି ହୋଇପାରିଥିଲା । କାଠ ମଧ୍ୟରେ ଅକ୍ଷର ସବୁ ଖୋଦନ କରାଯାଇ ମୁଦ୍ରଣ କରାଯାଉଥିଲା । ଏହି ବ୍ଲକ୍ ଗୁଡ଼ିକ କାଳି ଦିଆଯାଇ ବ୍ୟବହାରରେ ଲଗା ହେଉଥିଲା ।

**ଇଂଲଣ୍ଡରେ ରୋମୀୟ ଖ୍ରୀଷ୍ଟଧର୍ମ**

ଅଗଷ୍ଟାଇନ୍ ଏବଂ ତାଙ୍କର ଦଳ ୫୯୭ ଖ୍ରୀଷ୍ଟାବ୍ଦରେ ସମୁଦ୍ରକୂଳ ଆଡ଼କୁ ଅଗ୍ରସର ହେଲେ । ଇଂଲଣ୍ଡର ଅଧିବାସୀମାନେ ଖ୍ରୀଷ୍ଟଧର୍ମରେ ଅନୁପ୍ରାଣିତ ହୋଇଥିଲେ । ଧର୍ମ ଯାଜକମାନେ ସମଗ୍ର ଇଂଲଣ୍ଡରେ ଧର୍ମ ପ୍ରଚାର ଚଳାଇଲେ । ଗୋଟାଏ ଶତାବ୍ଦୀ ମଧ୍ୟରେ ମୂର୍ତ୍ତିପୂଜା ପ୍ରଭୃତି ବନ୍ଦ ହୋଇଗଲା । ଏପରିକି ପ୍ରାଚୀନ କାଳର ସାକ୍ସୋନ ଦେବତାମାନଙ୍କୁ ନଷ୍ଟ କରାହେଲା ।

ଧର୍ମଯାଜକମାନେ କିନ୍ତୁ ଦୁଇଟି ଅଞ୍ଚଳରୁ ଯାଇଥିଲେ । ସେଣ୍ଟ ଅଗଷ୍ଟାଇନଙ୍କ ଅନୁଗାମୀଙ୍କ ଦ୍ୱାରା ରୋମୀୟ ଖ୍ରୀଷ୍ଟଧର୍ମ ଗ୍ରହଣ କରାଯିବ କି ନା ଅଇଓନା, ଆୟରଲାଣ୍ଡ ଓ ନର୍ଥ ଉମ୍ବ୍ରିଆର ଲୋକଙ୍କ ଖ୍ରୀଷ୍ଟଧର୍ମ ଗ୍ରହଣ କରାଯିବ, ଏହି ବିଷୟ ନେଇ ବିରାଟ ସମସ୍ୟା ଦେଖାଦେଇଥିଲା । ପରିଶେଷରେ ରାଜା ଓସଓ୍ୱ ପ୍ରଶ୍ନର ଚାରନଥିକ୍ର ସମାଧାନ ପାଇଁ ଏକ ବୈଠକ ଡକାଇଲେ ୬୬୪ ଖ୍ରୀଷ୍ଟାବ୍ଦରେ ଫଳରେ ରୋମାନ ଖ୍ରୀଷ୍ଟଧର୍ମ ପ୍ରତି ଅନୁକୂଳ ମନୋଭାବ ପ୍ରକାଶ ପାଇଲା ଏବଂ ଏହାପରେ କେଲଟିକ୍ ଗୀର୍ଜାମାନ ରୋମୀୟ ଗୀର୍ଜା ଅଧୀନରେ ରହିଥିଲା ।

**ବିଶାଳ ମହାନଗରୀ**

ରୋମ ମହାନଗରୀରେ ଯାନବାହନଙ୍କୁ ନିର୍ଗତ ବିଷାକ୍ତ ଅବଶେଷ ଦ୍ୱାରା

ବାୟୁମଣ୍ଡଳ ଦୂଷିତ ହେଉଥିବା ଯୋଗୁଁ ଏହା ଦେଶରେ ପ୍ରଥମ ବିଷାକ୍ତ ମହାନଗରୀ ଭାବେ ପରିଚିତ ହୋଇଛି । ଦୈନିକ ୨୬୩ ଟନ୍ କାର୍ବନ ମନୋକ୍ସାଇଡ, ୪୦ ଟନ୍ ସଲଫର ଡାଇ-ଅକସାଇଡ, ୨୭ ଟନ ନାଇଟ୍ରୋଜେନ୍ ଅକ୍ସାଇଡ, ୩୦ ଟନ୍ ଧୂଳିକଣା ଓ ୩୭ ଟନ୍ ହାଇଡ୍ରୋକାର୍ବନ ନିର୍ଗତ ହୋଇଥାଏ ।

**ଲାଟିନ ଆମେରିକାରେ ତିନି ଜଣରେ ଜଣେ କ୍ଷୁଧାର୍ତ୍ତ**

ଲାଟିନ ଆମେରିକାରେ ପ୍ରତି ତିନିଜଣ ଲୋକଙ୍କ ମଧ୍ୟରେ ଜଣେ ଭୋକିଲା ଅବସ୍ଥାରେ ରହୁଛନ୍ତି ଏବଂ ଲାଟିନ୍ ଆମେରିକା ୩୬୦ ଶହ କୋଟି ଟଙ୍କାର ଋଣଭାରଗ୍ରସ୍ତ ହୋଇ ରହିଥିବା ଯୋଗୁଁ ଏହି ଶୋଚନୀୟ ଅବସ୍ଥା ହୋଇଛି ।

**ସିଗାରେଟରେ ଡି. ଡି. ଟି.**

୨୧ ପ୍ରକାର ସିଗାରେଟ୍‌ରେ ନିଷିଦ୍ଧ କୀଟନାଶକ ଡି. ଡି. ଟି. ରହିଛି । ତୃତୀୟ ବିଶ୍ୱର ତମାଖୁ ଚଷୀମାନେ 'ଲଣ୍ଡନ' ନାମରେ କୀଟନାଶକ ଔଷଧ ବ୍ୟବହାର କରିଥା'ନ୍ତି ଏବଂ ୩୫ ପ୍ରକାର ସିଗାରେଟରେ ଏହାର ସତ୍ତା ରହିଛି ।

**ବିଶ୍ୱର ପ୍ରାଚୀନତମ ଘର**

ରୋଡେସିଆର ଉତ୍ତରାଞ୍ଚଳରେ ଥିବା କଲମ୍ବୋ ଫଲ୍ସ ନିକଟରେ ଏବେ କେତେକ ପ୍ରତ୍ନତାତ୍ତ୍ୱିକ ପ୍ରାଚୀନ ଘରର ସଂଧାନ ପାଇଛନ୍ତି । ଏହା ପ୍ରାୟ ୫୭ ହଜାର ବର୍ଷ ପୂର୍ବେ ନିର୍ମିତ ହୋଇଥିବା ବିଶ୍ୱାସ କରାଯାଉଛି । ଏହା ବିଶ୍ୱର ସର୍ବପ୍ରାଚୀନ ଘର ବୋଲି ଅନୁମାନ କରାଯାଏ ।

**ଛୁଞ୍ଚି ଫୋଡା ଚିକିତ୍ସା**

କୌଣସି ପ୍ରକାର ବ୍ୟାଧି ବିଶେଷକରି ମାଂସପେଶୀ ଓ ଅଣ୍ଟାଗଣ୍ଠିର ରୋଗ କ୍ଷେତ୍ରରେ ସବୁ ପ୍ରକାର ଔଷଧପତ୍ର କରିସାରିବା ପରେ ଅନ୍ତତଃ ଥରେ "ଆକ୍ୟୁପଙ୍କଚର"ର ଆଶ୍ରୟ ନେବାଦ୍ୱାରା ଏହି ରୋଗ ଅତି ସହଜରେ ଭଲ ହୋଇପାଇ ପାରେ ।

ଆକ୍ୟୁପଙ୍କଚର ହେଉଛି ଏକ ପ୍ରାଚୀନ ଚିକିତ୍ସା ପଦ୍ଧତି, ଯାହାର ଉପକରଣ ଭିତରେ କେଇଟି ଛୁଞ୍ଚିହିଁ ମୁଖ୍ୟ । ପ୍ରାୟ ପାଞ୍ଚ ହଜାର ବର୍ଷର ଏହି ପୁରୁଣା ଛୁଞ୍ଚିଫୋଡା ଚିକିତ୍ସା ଚୀନରେ ବିଶେଷ ଆଦୃତ ହୋଇପାରିଛି ।

ଅଣ୍ଟାଗଣ୍ଠି ବାତ, ବେକ ଧରିବାଠାରୁ ଆରମ୍ଭ କରି ବହୁ ରୋଗ ସାଧ୍ୟାତୀତ ହେବା ପୂର୍ବରୁ ଛୁଞ୍ଚିଫୋଡା ଚିକିତ୍ସା ଦ୍ୱାରା ଉପଶମ ହୋଇପାରେ ।

**ଦେଶର ସବୁଠୁ ଉଚ୍ଚତମ ପାଣିପାଗ କେନ୍ଦ୍ର**

ଲେହ ନିକଟବର୍ତ୍ତୀ, କେମୋ ପାର୍ବତ୍ୟ ଅଞ୍ଚଳରେ ଏକ ପାଣିପାଗ ତଥା ଅନୁସନ୍ଧାନ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ଏହା ଦେଶର ସବୁଠାରୁ ଉଚ୍ଚ ପାଣିପାଗ କେନ୍ଦ୍ର । ଏହି କେନ୍ଦ୍ର ସମୁଦ୍ର ପତନଠାରୁ ୧୩ ହଜାର ଫୁଟ ଉଚ୍ଚରେ ଅବସ୍ଥିତ ।

**୫ ହଜାର ଫୁଟ ଉପରେ ମାଛ ଚାଷ**

କେହି ଯଦି କହେ, ସମୁଦ୍ର ପତନ ଠାରୁ ପାଞ୍ଚ ହଜାର ଫୁଟ ଉଚ୍ଚରେ ଥିବା ପାହାଡ଼ିଆ ଇଲାକାରେ ମାଛଚାଷ କରଯାଉଛି, ତେବେ କଥାଟିକୁ ହଠାତ୍ କେହି ବିଶ୍ୱାସ କରି ନ ପାରନ୍ତି । କିନ୍ତୁ ଅବିଶ୍ୱାସ ହେଲେ ବି ସମୁଦ୍ର ପତନଠାରୁ ୫୦୦୦ ଫୁଟ ଉଚ୍ଚରେ ଅବସ୍ଥିତ ଅରୁଣାଚଳ ପ୍ରଦେଶରେ ଏବାର ଓ ମିଶ୍ମିପାହାଡ଼ରେ ଏବେ ରେହୁ, ଭାକୁର ଓ ମିରିକାଳି ଆଦି ଜାତିଆ ମାଛ ଚାଷ କରଯାଉଛି । ମାଛ ପାଇଁ ସରକାରଙ୍କ ପକ୍ଷରୁ ୧୬୦ ଲକ୍ଷ ଟଙ୍କା ଖର୍ଚ୍ଚ କରଯାଇଛି । ଆସନ୍ତା ପାଞ୍ଚ ବର୍ଷ ମଧ୍ୟରେ ଏହି ଇଲାକାର ମାଛଚାଷର ଉନ୍ନତି ପାଇଁ ଆଉ ୩୫ ଲକ୍ଷ ଟଙ୍କାର ବ୍ୟୟ ବ୍ୟବସ୍ଥା କରଯାଇଛି ।

ଅରୁଣାଚଳ ପ୍ରଦେଶର ବହୁ ନଦୀ, ଝରଣା ଓ ପୋଖରୀରେ ମାଛଚାଷର ବ୍ୟାପକ ସମ୍ଭାବନା ରହିଛି । ସଂପ୍ରତି ରାଜ୍ୟରେ ଆଠଟି ଯୋଜନା ମାଧ୍ୟମରେ ମାଛଚାଷ କର-ଯାଉଛି । ମାଛଚାଷର ବିକାଶ ନିମନ୍ତେ ଆସନ୍ତା ପାଞ୍ଚ ବର୍ଷ ପାଇଁ ଯେଉଁ ସବୁ ଯୋଜନା ପ୍ରସ୍ତୁତ କରଯାଉଛି, ତନ୍ମଧ୍ୟରେ ମାଛ ଯାଆଁଳ ଚାଷ ଏବଂ ଚାଷ ଜମିରେ ଧାନ ସାଙ୍ଗକୁ ମାଛ ଚାଷ ସଂକ୍ରାନ୍ତ ଶିକ୍ଷା ତାଲିମ ବ୍ୟବସ୍ଥା ଅନ୍ତର୍ଭୁକ୍ତ ।

**ଜନସଂଖ୍ୟା ବୃଦ୍ଧିହାର କମୁଛି**

ଗତ କେତେବର୍ଷ ହେଲା ଜନସଂଖ୍ୟା ବୃଦ୍ଧିର ହାର କମିଯାଇଥିବା ଲକ୍ଷ୍ୟ କରଯାଉଛି । ଆସନ୍ତା ଶହେବର୍ଷ ପର୍ଯ୍ୟନ୍ତ ଜନସଂଖ୍ୟା ମନ୍ଥର ଗତିରେ ବୃଦ୍ଧି ପାଇବ ବୋଲି ପ୍ରସ୍ତୁତ ରିପୋର୍ଟରେ କୁହାଯାଇଛି । ଏବେ ବିଶ୍ୱରେ ୪.୮ ବିଲିୟନ ସଂଖ୍ୟା ଥିବାବେଳେ ସେ ସମୟ ବେଳକୁ ୧୦.୨ ବିଲିୟନ ହେବ ବୋଲି ଦର୍ଶାଯାଇଛି । ଅଧିକାଂଶ ବିକାଶଶୀଳ ଦେଶରେ ଜନସଂଖ୍ୟା ବୃଦ୍ଧି ପାଇବ ବୋଲି କୁହାଯାଇଛି ।

**ବିଶ୍ୱ ସାମରିକ ଖର୍ଚ୍ଚ ୯୪୪ ବିଲିୟନ ଡଲାର**

ସମସ୍ତ ବିଶ୍ୱରେ ସାମରିକ ବ୍ୟୟ ଏ ବର୍ଷ ୯୪୪ ବିଲିୟନ ଡଲାର ହେବ ବୋଲି ଜଣାଯାଉଛି, ୧୯୮୩ ସାମରିକ ବ୍ୟୟ ବାବଦ ୮୧୦ ବିଲିୟନ ହୋଇଥିଲା । ୧୯୮୪ରେ ୮୭୫ ବିଲିୟନ ଏବଂ ଏବର୍ଷ ୯୪୪ ବିଲିୟନ ଡଲାର ହୋଇଛି ବୋଲି ଜଣାଯାଉଛି ।

: ମନେ ରଖ

ଭାରତର ପ୍ରଥମ ଆଇ. ସି. ଏସ. କିଏ ?—ସତ୍ୟେନ୍ଦ୍ର ନାଥ ଠାକୁର

ଜାତିସଂଘର ପ୍ରଥମ ଭାରତୀୟ ସଭାପତି କିଏ ? —ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ।

ବ୍ରିଟିଶ ପାର୍ଲିଆମେଣ୍ଟର ପ୍ରଥମ ଭାରତୀୟ ସଭ୍ୟ କିଏ ?—ଦାଦାଭାଇ ନାରୋଜୀ ।

ପ୍ରଥମ ଭାରତୀୟ ହାଇକୋର୍ଟ ଜଜ୍ କିଏ ? —ରାମ ପ୍ରସାଦ ରାୟ ।

ପ୍ରଥମ ଭାରତୀୟ ପ୍ରଧାନ ସେନାପତି କିଏ ? —ଜେନେରାଲ କାରିଅପ୍ପା ।

ଭାରତର ପ୍ରଥମ ମହିଳା ମନ୍ତ୍ରୀ କିଏ ?—ରାଜକୁମାରୀ ଅମୃତକାଉର ।

ଭାରତର କେଉଁ ମହିଳା ପ୍ରଥମ ଗଭର୍ଣ୍ଣର ହୋଇଥିଲେ ?—ସରୋଜିନୀ ନାଇଡୁ ।

ପ୍ରଥମ ଭାରତୀୟ ଗଭର୍ଣ୍ଣର କିଏ ?—ଲର୍ଡ ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ ।

କଂଗ୍ରେସ ମହାସଭାର ପ୍ରଥମ ନାରୀ ସଭାପତି କିଏ ?—ଡକ୍ଟର ଆନିବେସାନ୍ତ

ଇଂଲଣ୍ଡର ଅନ୍ଧକବି କିଏ ?—ଜନ ମିଲଟନ ।

ଓଡ଼ିଶାର ଶ୍ରେଷ୍ଠ ବୈଜ୍ଞାନିକ କିଏ ?—ଶେଖର ସିଂହ ସାମନ୍ତ ।

ଓଡ଼ିଶାର ଅନ୍ଧକବି କିଏ ?—ସନ୍ଥକବି ଭୀମ ଭୋଇ ।

ଭାରତର ପ୍ରଥମ ମହିଳା ଏମ. ଏ. କିଏ ?—ଶ୍ରୀମତୀ ଚନ୍ଦ୍ରମୁଖୀ ବୋଷ ।

**ଭିସିଗୋଥମାନଙ୍କ ଲୁଣ୍ଠନ**

୪୧୦ ଖ୍ରୀଷ୍ଟାବ୍ଦରେ ବର୍ଣ୍ଣ୍ୟ ମନିଷ ସେମାନଙ୍କର ପରିବାର ଧରି ଇଉରୋପ ଆଡକୁ ଅଗ୍ରସର ହୋଇଥିଲେ । ରୋମ ସାମ୍ରାଜ୍ୟ ପ୍ରତି ଏହା ପ୍ରତିବନ୍ଧକର କାରଣ ହେଲା ଏବଂ ଦକ୍ଷିଣାଂଶ ଜଙ୍ଗଲର ବର୍ବର ମନିଷମାନେ ଭିସିଗୋଥ୍ ଯୋଦ୍ଧାଙ୍କ ସହ ମିଳିତ ହେଲେ । ଆଲରିକ ସେମାନଙ୍କ ସେନାପତି ହେଲେ । ସେମାନେ ପ୍ରଥମେ ଗ୍ରୀକ୍ ଅଭିଯାନ ଆରମ୍ଭ କରିଦେଲେ । ଏଥେନ୍ସ, ସ୍ପାର୍ଟ ଓ କୋରିନ୍ଥରୁ ଲୁଣ୍ଠନ ମଧ୍ୟ ଚାଲିଲା । ଅଧିବାସୀମାନେ କ୍ରୀତଦାସ ଅବସ୍ଥାକୁ ଆସିଲେ । ଗ୍ରୀସ ଏବଂ ବେଲକାନ ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା । ଆଲରିକ୍ ରୋମ ଆଡକୁ ଅଗ୍ରସର ହେଲେ ଏବଂ ରୋମ ସେନାପତି ଷ୍ଟିଲିକୋ ପ୍ରତିରୋଧ କରିବାରେ ଲାଗିଲେ । ମାତ୍ର ଆଲରିକ୍‌ଙ୍କ ସୈନ୍ୟବାହିନୀକୁ ହଟାଇ ପାରିଲେ ନାହିଁ । ତିନିଦିନ ଧରି ଲୁଣ୍ଠନ କରିବା ପରେ ଆଲରିକ୍ ନିଜର ସୈନ୍ୟମାନଙ୍କୁ ଏକତ୍ରିତ କରାଇ ଖାଦ୍ୟାଭାବର ସମ୍ମୁଖୀନ ହେଲେ । ସୈନ୍ୟମାନଙ୍କୁ ଦକ୍ଷିଣକୁ ଅଗ୍ରସର କରାଇବା ସମୟରେ ସିସିଲିଠାରେ ତାଙ୍କର ମୃତ୍ୟୁ ଘଟିଥିଲା ।

### ଅଗଷ୍ଟାଇନଙ୍କ ଗ୍ରନ୍ଥ ରଚନା

ଟ୍ୟୁନିସ୍ ଠାରେ ଅଗଷ୍ଟାଇନ୍ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମାତା ହେଉଛନ୍ତି ରୋମାନ୍ । ସେ ଖ୍ରୀଷ୍ଟିୟାନ ଥିଲେ ମଧ୍ୟ ପ୍ରାଥମିକ ଜୀବନରେ ଧର୍ମ ପ୍ରତି ଆସ୍ଥା ରଖିଲେ ନାହିଁ । ତାଙ୍କର ତେତିଶ ବର୍ଷ ବେଳେ ସେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହେଲେ । ଧର୍ମଯାଜକ ହେବା ପାଇଁ ସେ ଅଧ୍ୟୟନରେ ଲାଗିଲେ । ଅଗଷ୍ଟ ଇନ୍ କନ୍‌ଫେସନ୍ସ ଏବଂ ଦ ସିଭିଟାଟ୍ ଡେଇ ନାମରେ ପୁସ୍ତକ ରଚନା କରି ବିଶ୍ୱବିଖ୍ୟାତ ହୋଇଥିଲେ ।

### ମେରୋଭିଙ୍ଗିଅନ୍ ସାମ୍ରାଜ୍ୟ ପ୍ରତିଷ୍ଠା

ମିଉସ ନଦୀ କୂଳରେ ସାଲିଅନ୍ ଉପଜାତି ବସତି ସ୍ଥାପନ କରିଥିଲେ । ଖ୍ରୀଷ୍ଟିୟ ପଞ୍ଚମ ଶତାବ୍ଦୀରେ ରୋମାନମାନେ ଯୁଦ୍ଧ ପ୍ରତ୍ୟାହାର କରିନେବାରୁ ଫ୍ରାଙ୍କ୍ର ସାଲିଅନମାନେ ସ୍ୱାଧୀନ ହୋଇଗଲେ । ସେମାନଙ୍କର ସର୍ବପ୍ରଥମ ରଜା ହେଉଛନ୍ତି ମେରୋଭେକ୍ ଏବଂ ସେ ମେରୋଭିଙ୍ଗିଅନ ସାମ୍ରାଜ୍ୟର ପ୍ରତିଷ୍ଠାତା ଫ୍ରାନ୍ସର ଶାସନକର୍ତ୍ତା ହୋଇଥିଲେ । ତାଙ୍କର ପୁତ୍ର ହେଉଛନ୍ତି ଚିଲ୍ଡେରିକ୍—୧

### ଆୟରଲାଣ୍ଡରେ ସେଣ୍ଟ ପାଟ୍ରିକ୍

ସେଣ୍ଟ ପାଟ୍ରିକ୍ ଆୟାରଲାଣ୍ଡର ଧର୍ମପ୍ରଚାରକ । ସେ ବ୍ରିଟେନର ସେଭେରନ୍ ନଦୀ କୂଳରେ ଜନ୍ମ ଗ୍ରହଣ କରିଥିଲେ । ଖ୍ରୀଷ୍ଟିୟାନ ଘରରେ ସେ ଶିକ୍ଷାର୍ଜନ କରୁଥିବା ବେଳେ ଷୋହଳ ବର୍ଷ ବୟସରେ ଆୟାର୍ଲାଣ୍ଡର ଜଳଦସ୍ୟୁମାନଙ୍କ ଦ୍ୱାରା ଧରାହେଲେ । ତାଙ୍କୁ ମେଷ ପାଳକ ହେବାପାଇଁ ବାଧ୍ୟ କରାଗଲା । କୌଣସି ଉପାୟରେ ସେ ରକ୍ଷା ପାଇଗଲେ । ଧର୍ମ ସମ୍ପର୍କରେ ଟ୍ରେନିଂ ପାଇବା ପରେ ବ୍ରିଟେନକୁ ଫେରି ଆସିଲେ ଏବଂ ଏହାପରେ ସେ ଆୟାରଲାଣ୍ଡକୁ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଗଲେ । ୪୩୨ ଖ୍ରୀଷ୍ଟାବ୍ଦରେ ପୋପ୍ କନଷ୍ଟାଣ୍ଟାଇନ୍—୧ ତାଙ୍କୁ ନିଯୋଗ କରିଦେଲେ । ସେହି ବର୍ଷ ଆୟରଲାଣ୍ଡକୁ ଧର୍ମପ୍ରଚାର କାର୍ଯ୍ୟରେ ଯାଇ ଖ୍ରୀଷ୍ଟାବ୍ଦର ପ୍ରଚାର କରାଇଲେ ।

### ଜୁଟ୍, ଏଙ୍ଗଲ ଓ ସାକ୍ସନଙ୍କ ଦ୍ୱାରା ବ୍ରିଟେନ ଆକ୍ରମଣ

ରୋମ ସହାୟତାରେ ଶତାବ୍ଦୀ ଶତାବ୍ଦୀ ଧରି ବ୍ରିଟେନର ଅଗ୍ରଗତି ହୋଇଥିଲା । ୪୧୦ ଖ୍ରୀଷ୍ଟାବ୍ଦରେ ସୈନ୍ୟମାନଙ୍କୁ ଫେରାଇ ନେବାରୁ ବ୍ରିଟେନ ବାରମ୍ବାର ଆକ୍ରମଣର ସମ୍ମୁଖୀନ ହେଲା । ଡେନମାର୍କର ଉତ୍ତର ପଶ୍ଚିମ ଦିଗରୁ ଟିଉଟୋନିକ୍ ଉପଜାତି ଏଙ୍ଗଲ ସର୍ବପ୍ରଥମେ ଆକ୍ରମଣ କରିଥିଲେ । ସେମାନେ ହିଂସାକାଣ୍ଡ ଘଟାଇ

ଉପସ୍ଥାନ କଲେ ଏବଂ ସେହି ଅଞ୍ଚଳର ନାମକରଣ କରଇଥିଲେ ପୂର୍ବ ଏଙ୍ଗିଲା । ସେମାନଙ୍କର ପଡ଼ୋଶୀ ହେଉଛନ୍ତି ସାକ୍ସନ ଏବଂ ସେମାନେ ସେହି ଟିଉଟୋନିକ୍ର ଉପଜାତିର । ଏଙ୍ଗଲ [illegible] ସାକ୍ସନମାନଙ୍କର ଯଥେଷ୍ଟ ପ୍ରଭାବ ଇଂଲଣ୍ଡରେ ରହିଥିଲା । ଟିଉଟୋନିକ ଉପଜାତିର ଅନ୍ୟ ଏକ ଜାତି ଜୁଟ୍ ବ୍ରିଟେନ ଉପକୂଳରେ ରହୁଥିଲେ । ଏଙ୍ଗଲୋ ଓ ସାକ୍ସନମାନେ ମିଶି ବ୍ରିଟୋନଙ୍କ ଜୟ କରିଥିଲେ ।

## ଆଟିଲାଙ୍କ ଗଲ୍ ଆକ୍ରମଣ

ପଞ୍ଚମ ଶତାବ୍ଦୀରେ ଅଟିଲାଙ୍କୁ 'ଦି ସ୍କୋରେଜ ଅଫ ଗଡ' ବୋଲି ଆଖ୍ୟା ଦିଆଯାଇଛି । ସେ ହେଉଛନ୍ତି ଜଣେ ହୂନ୍ । ସେ ୪୦୬ ଖ୍ରୀଷ୍ଟାବ୍ଦରେ ଜନ୍ମ ହୋଇଥିଲେ । ତାଙ୍କର କକାଙ୍କର ମୃତ୍ୟୁ ଫଳରେ ସେ ଶାସକ ହୋଇଯାଇଥିଲେ । ୪୪୭ ଖ୍ରୀଷ୍ଟାବ୍ଦରେ ଦାନୁବ୍ ଅଭିମୁଖେ ଅଗ୍ରସର ହୋଇ ହତ୍ୟା ଓ ଉପଦ୍ରବ ଆରମ୍ଭ କରିଦେଲେ । ୪୫୧ ଖ୍ରୀଷ୍ଟାବ୍ଦରେ ସେ ଗଲ୍ ଅଭିଯାନ ପାଇଁ ଅଗ୍ରସର ହେଲେ ।

## କ୍ଲୋଭିସ୍ଙ୍କର ଖ୍ରୀଷ୍ଟଧର୍ମ ଗ୍ରହଣ

ମେରୋଭିଞ୍ଜିଅନ୍ ସାମ୍ରାଜ୍ୟ ୪୨୮ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ହୋଇଥିଲା । ଏହି ସାମ୍ରାଜ୍ୟ କ୍ରମଶଃ ଶକ୍ତିଶାଳୀ ହୋଇ ଉଠିଲା । ଫ୍ରାନସ ଆଡକୁ ଅଗ୍ରସର ହୋଇ ସାମ୍ରାଜ୍ୟ ପକ୍ଷରୁ ଟୋର୍ଣ୍ଣାଇ ଠାରେ ରାଜଧାନୀ ସ୍ଥାପନ କରଗଲା । ୪୮୧ ଖ୍ରୀଷ୍ଟାବ୍ଦରେ କ୍ଲୋଭିସ ନୂତନ ରାଜା ହୋଇଥିଲେ । ସେ ରୋମ ସେନାପତି ସ୍ୟାଗ୍ରିୟସଙ୍କ ସହିତ ସର୍ବପ୍ରଥମେ ଯୁଦ୍ଧ ଚଳାଇଥିଲେ ଏବଂ ଯୁଦ୍ଧରେ ପରାଜିତ ବି କରାଇ ଥିଲେ । କ୍ଲୋଭିସ ଏହା ପରେ ସୋଇସୋନ୍ ଠାରେ ରାଜଧାନୀ ନିର୍ମାଣ କରିଥିଲେ । ୪୯୩ ଖ୍ରୀଷ୍ଟାବ୍ଦରେ ବୁରଗଣ୍ଡ ରାଜକନ୍ୟା କ୍ଲୋଟିଲଡାଙ୍କୁ ବିବାହ କରି ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କଲେ ।

## ମାଉଣ୍ଟ ବାଡୋନ ଯୁଦ୍ଧ

ସ୍କଟଲାଣ୍ଡ, ୱେଲ୍ସ ଓ ପଶ୍ଚିମ କର୍ଣ୍ଣୱାଲ ବ୍ୟତୀତ ବ୍ରିଟେନର ଅଧିକାଂଶ ଆଙ୍ଗଲୋସାକ୍ସନ ଆକ୍ରମଣକାରୀମାନେ ଦଖଲ କରିନେଲେ । ଏହାପରେ ସେମାନେ ଜଟିଳ ପରିସ୍ଥିତିର ସମ୍ମୁଖୀନ ହେଲେ । ବ୍ରିଟୋନସ୍ ରୋମୀୟ ଖ୍ରୀଷ୍ଟିୟାନ ଏବଂ କେଲ୍ଟିକ ସଭ୍ୟତାର ପ୍ରସାର ଘଟିଲା । ଏହି ପରିବାରବୃନ୍ଦଙ୍କ ଯୁଦ୍ଧ ସମ୍ପର୍କରେ ଧାରଣା ରଖି ସାକ୍ସନମାନଙ୍କର ପ୍ରତିରୋଧ କରିବାରେ ଲାଗିଲେ । ଏହି ଦୁଃ-ସମୟ ସମ୍ପର୍କରେ ଗିଲ୍ଡାସଙ୍କର 'ଦ ଏକସ ସିସଓ ଇଏଟ୍ କଙ୍କୁଏଷ୍ଟ ବ୍ରିଟାନିଆ' ରେ ସମସ୍ତ ଲିପିବଦ୍ଧ କରିଛନ୍ତି ।

ଏହି ସମୟରେ ଇଂଲଣ୍ଡ ସେନାପତି ଆରଥର୍ ହେଉଛନ୍ତି ଜଣେ ବିଶିଷ୍ଟ ଯୋଦ୍ଧା । ସାକସନଙ୍କ ବିରୁଦ୍ଧରେ ସେ ବାରୋଟି ଯୁଦ୍ଧ କ୍ଷେତ୍ରରେ ଯୁଦ୍ଧ କରିଥିଲେ । ମାଉଣ୍ଟ ବାଡୋନରେ ହିଁ ଶେଷ ଯୁଦ୍ଧ ହୋଇଥିଲା ।

## ଆମେରିକାର ମାୟାସ୍ ସଭ୍ୟତା

ଦକ୍ଷିଣ ଆମେରିକାର ମାୟାସ ସଭ୍ୟତାର ଜନସାଧାରଣ ୩୦୦ ଖ୍ରୀଷ୍ଟାବ୍ଦରେ ଉନ୍ନତ ଅଞ୍ଚଳ ଅନୁସନ୍ଧାନରେ ଉତ୍ତରାଞ୍ଚଳକୁ ସ୍ଥାନାନ୍ତର ଗମନ କଲେ । ଏହି ସଭ୍ୟତାର ଅଷ୍ଟାଦଶ ଉପଦଳ ମେକ୍ସିକୋରେ ରହିବା ପାଇଁ ସ୍ଥିର କରିଥିଲେ । ସେମାନେ ସେହି ସ୍ଥାନର ନାମକରଣ କରାଇଲେ ଚିଜେନ ଇଟଜା । ଏହି ନଗରକୁ ପବିତ୍ର ସହର ବୋଲି କୁହାଯାଇ ଥାଏ ।

## କ୍ଷୁଦ୍ରତମ ତୈଳଚିତ୍ର

ଇଟାଲୀର ଚିତ୍ରଶିଳ୍ପୀ ଅତିକ୍ଷୁଦ୍ର ତୈଳଚିତ୍ର ପ୍ରସ୍ତୁତ କରିଛନ୍ତି । ଏହାର ଉଚ୍ଚ ୨.୨ ମିଲି ଲିଟର । ଏହି ଚିତ୍ରରେ ବଡ ପ୍ରାସାଦ ଓ ଛୋଟ ଗଛର ଚିତ୍ର ରହିଛି । ଚିତ୍ର ଶିଳ୍ପୀଙ୍କ ନାମ ଏମଟୋମେଲିଏରୀ ।

## ପ୍ରୋଟିନ ଖାଦ୍ୟରେ ଲବଣର ଆବଶ୍ୟକତା ହ୍ରାସ

ଉଚ୍ଚ ପ୍ରୋଟିନଯୁକ୍ତ ଖାଦ୍ୟ ଗ୍ରହଣ ଦ୍ୱାରା ଶରୀରରେ ଲବଣର ଆବଶ୍ୟକତା ହ୍ରାସ ପାଏ । ଫଳରେ ହୃଦରୋଗ ଓ ରକ୍ତଚାପ ରୋଗ ହୋଇଥାଏ । ଟୋହୋକୁ ବିଶ୍ୱବିଦ୍ୟାଳୟର ପ୍ରଫେସର କିମୁରା ଗବେଷଣା ଫଳରେ ଏହା ପ୍ରକାଶ କରନ୍ତି । ନିରାମିଷ ଆହାର କରୁଥିବା ବ୍ୟକ୍ତିମାନେ ଲୁଣ ଅଧିକ ଖାଆନ୍ତି । ମାତ୍ର ଜାପାନୀମାନେ ପ୍ରୋଟିନଯୁକ୍ତ ଖାଦ୍ୟ ଖାଇଥିବାରୁ କମ୍ ଲୁଣ ଖାଇଥା'ନ୍ତି ।

## ରୋମର ଦାର୍ଶନିକ ବୋଥିୟସ୍

ଏନିସିୟସ ବୋଥିୟସ୍ ରୋମର ବିଶିଷ୍ଟ ଦାର୍ଶନିକ ସ୍ତରରେ ସୁ-ପ୍ରତିଷ୍ଠିତ ହୋଇଥିଲେ । ମାତ୍ର ଦେଶଦ୍ରୋହୀ ସନ୍ଦେହରେ ତାଙ୍କୁ କାରାରୁଦ୍ଧ କରାଯାଇଥିଲା । ସେ କାରାଗାରରେ ରହିଥିବା ବେଳେ 'ଦି କନସୋଲେସନ ଫିଲିସୋଫି' ପୁସ୍ତକ ରଚନା କରିଥିଲେ । ବୋଥିୟସ୍ ୪୮୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ଏବଂ ତାଙ୍କର ପରଲୋକ ୫୨୩ ଖ୍ରୀଷ୍ଟାବ୍ଦରେ ହୋଇଥିଲା । 'ଦି କନସୋଲେସନ୍ ଫିଲିସୋଫି' ପୁସ୍ତକ ପାଇଁ ବୋଥିୟସ୍ ବିଶ୍ୱବିଖ୍ୟାତ ହୋଇଥିଲେ ।

**ସେଣ୍ଟ ସୋଫିଆ ଗାର୍ଜା**

ପ୍ରାଚୀନ କାଳରେ କନଷ୍ଟାଣ୍ଟିନୋପ୍‌ଲରେ ବ୍ୟାଜାଣ୍ଟିୟମ ସମ୍ରାଟ ହୋଇଟାରିଥିଲେ, ଥିଓଡୋସିୟସ୍ ସେମାନ ସାମ୍ରାଜ୍ୟକୁ ଦୁଇଭାଗ କରି ଦେଇଥିଲେ । ପ୍ରାଚ୍ୟ ସାମ୍ରାଜ୍ୟର ରାଜଧାନୀ ଥିଲା କନଷ୍ଟାଣ୍ଟିନୋପ୍‌ଲ । ପ୍ରାଚ୍ୟ ସାମ୍ରାଜ୍ୟ ଯଥେଷ୍ଟ ଶକ୍ତିଶାଳୀ ହୋଇଥିଲା । କନଷ୍ଟାଣ୍ଟିନୋପଲ ପ୍ରାସାଦ ମାଳିନୀ ନଗର ଥିଲା । ଥିଏଟର୍, ସର୍କସ ଓ ଗୀର୍ଜା ଦ୍ୱାରା ରାଜଧାନୀ ଅତୁଳି ମନୋହର ଦିଶୁଥିଲା । କନଷ୍ଟାଣ୍ଟିନୋପଲ୍ ପ୍ରତିଷ୍ଠିତ ହେବାର ଛଅ ବର୍ଷ ମଧ୍ୟରେ ନଗରର କାର୍ଯ୍ୟ ଶେଷ ହୋଇ ଯାଇଥିଲା ଏବଂ ଏହି ନଗରରେ ଖ୍ରୀଷ୍ଟଧର୍ମର ପ୍ରସାର ଘଟିଥିଲା । ସମ୍ରାଟ ଯଷ୍ଟିନିୟାନଙ୍କ ଶାସନ କାଳରେ କନଷ୍ଟାଣ୍ଟିନୋପ୍‌ଲ ଉନ୍ନତିର ଶୀର୍ଷସ୍ଥାନକୁ ଯାଇଥିଲା । 'କୋଡେକ୍ସ କନଷ୍ଟିଟ୍ୟୁସନମ୍' ତାଙ୍କ ଦ୍ୱାରା ୫୨୯ ଖ୍ରୀଷ୍ଟାବ୍ଦରେ ପ୍ରବର୍ତ୍ତିତ ହୋଇଥିଲା । ଏଥିରେ ସେମାନ ଆଇନ ଗୁଡ଼ିକର ସେ ପରିବର୍ତ୍ତନ କରାଇଥିଲେ ।

ବ୍ୟାଜାଣ୍ଟିୟମଙ୍କ ଶାସନ କାଳରେ ଚିତାକର୍ଷକ ପ୍ରାସାଦର ନିର୍ମାଣ କରଯାଇଥିଲା । ୫୩ ଫୁଟ ଉଚ୍ଚର ସେଣ୍ଟ ସୋଫିଆ ଗୀର୍ଜା ସେ ସମୟରେ ନିର୍ମିତ ହୋଇଥିଲା । ଏଠାରେ ଏବେ ଏକ ମସ୍‌ଜିଦ୍ ରହିଛି ।

**କେତୋଟି ଜାଣିବା କଥା**

| | | |
|---|---|---|
| ନିଉଫାଉଣ୍ଡଲ୍ୟାଣ୍ଡ | — | ଖବରକାଗଜ ଦେଶ |
| ଆୟାରଲ୍ୟାଣ୍ଡ | — | ମର୍କତ ମଣିଷର ଦ୍ୱୀପ |
| ଥାଇଲ୍ୟାଣ୍ଡ | — | ଧଳା ହାତୀର ଦେଶ |
| ତିବ୍ବତ | — | ନିଷିଦ୍ଧ ଦେଶ |
| ଜାପାନ | — | ବଜ୍ରପାତର ଦେଶ |
| ସାଇପ୍ରସ | — | ତମ୍ବାର ଦେଶ |
| ରୋମ | — | ସପ୍ତ ପାହାଡ଼ର ଦେଶ |
| ପଞ୍ଜାବ | — | ପଞ୍ଚ ନଦୀର ଦେଶ |

**ଆଲବିଜେନସିଆନ୍ ଅଭିଯାନ**

ଦ୍ୱାଦଶ ଶତାବ୍ଦୀରେ ଦକ୍ଷିଣ ଫ୍ରାନସରେ ଏକ ନୂତନ ସମ୍ପ୍ରଦାୟର ଅନୁଗାମୀମାନଙ୍କୁ ଆଲବିଜେନସେସ୍ ବୋଲି କୁହାଯାଉଥିଲା । ପୋପ୍ ଇନୋସେଣ୍ଟ ୩ୟ ମିଶନାରୀମାନଙ୍କୁ ନ ପଠାଇବା ପର୍ଯ୍ୟନ୍ତ ଏହି ଧର୍ମ ସେଠାରେ ପ୍ରସାରିତ ହୋଇଥିଲା । ୧୨୦୮ ଖ୍ରୀଷ୍ଟାବ୍ଦରେ ପୋପ୍‌ଙ୍କର ପ୍ରତିନିଧିଙ୍କୁ ହତ୍ୟା କରାଯିବାରେ ପୋପ୍ ସ୍ୱୟଂ

ଅଭିଯାନ ଆରମ୍ଭ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଆଲବିଜେନସେସ୍‌ମାନେ ପରାଜିତ ହେଲେ ୧୨୪୪ ଖ୍ରୀଷ୍ଟାବ୍ଦରେ ଏବଂ ସେମାନଙ୍କର ମୂଳୋତ୍ପାଟନ ହୋଇଗଲା ପୋପଙ୍କର ଏହି ଅଭିଯାନରେ ।

**ସନ୍ଥ ଫ୍ରାନସିସ୍**

କେନ୍ଦ୍ରୀୟ ଇଟାଲୀର ଆସିସି ସମ୍ପ୍ରଦାୟର ବସ୍ତ୍ର ବ୍ୟବସାୟୀଙ୍କର ପୁତ୍ର ଫ୍ରାନସିସ୍ ୧୧୮୧ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ଯୁବକ ଅବସ୍ଥାରେ ସେ 'ନାଇଟ୍' ସମ୍ପ୍ରଦାୟର ରୀତିକୁ ବେଶ ପସନ୍ଦ କରୁଥିଲେ । ମାତ୍ର ପରେ ତାଙ୍କର ଚିନ୍ତାଧାରାର ପରିବର୍ତ୍ତନ ଆସିଲା । ସେ ପୋପ୍‌ଙ୍କର ଆଶୀର୍ବାଦରେ ରୋମ ଗଲେ । ଶେଷରେ ହଜାର ହଜାର ଶିଷ୍ୟଙ୍କୁ ନେଇ ଫ୍ରାନସିସ୍କାନ ଧର୍ମର ପ୍ରଚଳନ କରାଇଲେ । ସେମାନେ ଅନ୍ୟ ସନ୍ଥମାନଙ୍କ ଭଳି ଆଶ୍ରମରେ ରହିଲେ ନାହିଁ । ଦେଶ ଦେଶ ଧରି ସେମାନେ ଧର୍ମ ପ୍ରଚାରରେ ଲାଗିପଡ଼ିଲେ । ଆବଶ୍ୟକ ହେଲେ ଖାଦ୍ୟ ଭିକ୍ଷା କରୁଥିଲେ । ସନ୍ଥ ଫ୍ରାନସିସ୍ ୧୨୨୬ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ ।

**ଜନ୍‌ଙ୍କର ମାଗ୍ନା କାର୍ଟାରେ ସ୍ୱାକ୍ଷର**

ରିଚାର୍ଡ ୧ମଙ୍କ ପରଲୋକ ପରେ ଜନ୍ ୧୧୯୯ ଖ୍ରୀଷ୍ଟାବ୍ଦ ମଇ ୨୭ ତାରିଖରେ ସିଂହାସନ ଆରୋହଣ କରିଥିଲେ । ରିଚାର୍ଡଙ୍କ ସାମରିକ ଅଭିଯାନ ବେଳେ ପୂର୍ବରୁ ଜନ୍ ନିଜକୁ ଉତ୍ପୀଡ଼କ ବୋଲି ପ୍ରମାଣିତ କରାଇଥିଲେ । ସିଂହାସନ ଆରୋହଣ ପରେ ସେ ଆହୁରି ଅତ୍ୟାଚାରୀ ହୋଇ ଯାଇଥିଲେ । ସେ ଇଂଲଣ୍ଡର କେତେକ ଅଂଶ ପୋପଙ୍କ ସହ ମନୋମାଳିନ୍ୟ ହେବା ଯୋଗୁଁ ହରାଇ ଦେଲେ । ଷ୍ଟିଫେନ ଲାଙ୍ଗଟୋନ୍‌ଙ୍କୁ କାଣ୍ଟେରବରିରେ ନିଯୁକ୍ତି କରିବା ବିଷୟରେ ପୋପ୍‌ଙ୍କ ସହ ଦ୍ୱନ୍ଦ୍ୱ ମଧ୍ୟ ହୋଇଥିଲା । ୧୨୧୫ ଖ୍ରୀଷ୍ଟାବ୍ଦ ଜୁନ ମାସରେ ରନିମେଡ଼ଠାରେ ମାଗ୍ନା କାର୍ଟାରେ ଜନ୍ ସ୍ୱାକ୍ଷର ଦେଇ ସ୍ୱୀକାର କଲେ ଯେ ରାଜା ଆଇନ ନିମ୍ନରେ ରହି ଶାସନ କାର୍ଯ୍ୟ ପରିଚାଳନା କରିବେ ।

**ନୋଭଗୋରଡର ଆଲେକଜାଣ୍ଡାର**

୧୨୨୪ ଖ୍ରୀଷ୍ଟାବ୍ଦରେ ତାର୍ତ୍ତାର ମଙ୍ଗୋଲମାନେ ରୁଷର ଦକ୍ଷିଣାଂଶରେ ପ୍ରବେଶ କଲେ । ଦୁଇ ଶତାବ୍ଦୀ ଧରି ରୁଷିଆରେ ସେମାନଙ୍କର ଆଧିପତ୍ୟ ଲାଗି ରହିଥିଲା ।

ରୁଷିଆର ଏକ ଅଂଶ ନୋଭଗୋରଡ କ୍ଷତିଗ୍ରସ୍ତ ହୋଇଥିଲା । ସୁଇଡେନବାସୀ ଏବଂ ଜର୍ମାନ ନାଇଟ୍‌ମାନେ ବି ଶତ୍ରୁ ହୋଇ ଉଠିଲେ ।

୧୨୪୦ ଖ୍ରୀଷ୍ଟାବ୍ଦରେ ରାଜକୁମାର ଆଲେକଜାଣ୍ଡାରଙ୍କ ନେତୃତ୍ୱରେ ନୋଭ-ଗୋରୋଡ୍ ବାସୀ ସୁଇଡେନ ଆକ୍ରମଣ କଲେ । ଦୁଇ ବର୍ଷ ପରେ ସେ ଜର୍ମାନର ନାଇଟ୍‌ମାନଙ୍କୁ ପରାଜିତ କରିଥିଲେ । ପେଇପସ୍ ହ୍ରଦଠାରେ ଏହି ଯୁଦ୍ଧ ଚାଲିଥିଲା । ସେ ବାସ୍ତବରେ ଜାଣିପାରିଥିଲେ ଯେ ତାଙ୍କର ସୈନ୍ୟମାନେ କେବେ ପରାଜିତ ହୋଇ ପାରିବେ ନାହିଁ । ନିଷ୍ଠାର ସହିତ ଯୁଦ୍ଧ କରିବାରେ ବିଜୟଲାଭ କରିଥିଲେ ।

**ହୋହେନଷ୍ଟାଫେନ୍ ସାମ୍ରାଜ୍ୟର ପତନ**

୧୧୩୮ ଖ୍ରୀଷ୍ଟାବ୍ଦରୁ ୧୨୫୪ ପର୍ଯ୍ୟନ୍ତ ଜର୍ମାନରେ ହୋହେନଷ୍ଟାଫେନ ମାନେ ସମ୍ରାଟ ହୋଇଆସିଥିଲେ । ୧୧୫୨ ଖ୍ରୀଷ୍ଟାବ୍ଦରେ ଫ୍ରେଡେରିକ୍ ବାରବାରୋସା ପବିତ୍ର ରୋମୀୟ ସମ୍ରାଟ ଥିବାବେଳେ ସାମ୍ରାଜ୍ୟ ଶକ୍ତିଶାଳୀ ଥିଲା । ଶେଷ ସମ୍ରାଟ ହେଲେ ଫ୍ରେଡେରିକ୍ ୨ୟ ଏବଂ ଶେଷ ରାଜା ଥିଲେ କୋର୍ଣ୍ଣାଡ ୪ର୍ଥ । ୧୨୬୮ ଖ୍ରୀଷ୍ଟାବ୍ଦରେ କୋର୍ଣ୍ଣାଡଙ୍କ ପୁତ୍ରଙ୍କର ଶାସନ ହୋହେନଷ୍ଟାଫେନ ସାମ୍ରାଜ୍ୟର ପତନ ଆଣି ଦେଇଥିଲା ।

**ଲିଓ୍ୱେଲିନ୍ ଓ୍ୱେଲସ୍‌ର ରାଜକୁମାର**

୧୨୫୦ ଖ୍ରୀଷ୍ଟାବ୍ଦରେ ଓ୍ୱେଲସ ଯୁଦ୍ଧ କ୍ଷେତ୍ରରେ ଲିଓ୍ୱେଲିନ୍ ଏପ୍ ଗ୍ରୁଫାଡ ଉତ୍ତର ଓ ଦକ୍ଷିଣ ଓ୍ୱେଲସ୍‌ର ସର୍ବେସର୍ବା ହୋଇଗଲେ । ୧୨୬୭ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ହେନେରି ୩ୟ ଲେଓ୍ୱେଲିନ୍‌ଙ୍କୁ ଓ୍ୱେଲସର ଯୁବରାଜ ହିସାବରେ ଏବଂ ସମଗ୍ର ଦେଶର ରାଜା ଭାବରେ ସ୍ୱୀକୃତି ଦେଲେ । ହେନେରିଙ୍କ ଉତ୍ତରାଧିକାରୀ ହୋଇଥିଲେ ଏଡଓ୍ୱାର୍ଡ ୧ମ । ସେ ଅବିଭକ୍ତ ରାଜ୍ୟକୁ ନିଜେ ଶାସନ କରିବାରେ ଲାଗିଲେ । ଏଡଓ୍ୱାର୍ଡ ୧୨୭୭ରେ ଓ୍ୱେଲସ୍ ଅଭିମୁଖେ ସୈନ୍ୟ ବାହିନୀଙ୍କୁ ଅଗ୍ରସର କରାଇଲେ । ଲେଓ୍ୱେଲିନଙ୍କୁ କ୍ଷମତାଚ୍ୟୁତ କରିବାକୁ ଚାହିଁଲେ । ଫଳରେ ଯୁଦ୍ଧ ହେଲା ଏବଂ ୧୨୮୨ରେ ଲେଓ୍ୱେଲିନ ନିହତ ହେଲେ । ଦୁଇବର୍ଷ ପରେ ଏଡଓ୍ୱାଡ ତାଙ୍କର ପୁତ୍ରଙ୍କୁ ଓ୍ୱେଲସର ଯୁବରାଜ ଭାବରେ ଘୋଷଣା କଲେ ।

**କୁବଲାଇ ଖାଁ**

ଜେଙ୍ଗିସ୍ ଖାଁ ପୀତ ସାଗରଠାରୁ ପାରସ୍ୟ ଉପସାଗର ଏବଂ କୃଷ୍ଣ ସାଗର ପର୍ଯ୍ୟନ୍ତ ବିଶାଳ ସାମ୍ରାଜ୍ୟକୁ ଶାସନ କରୁଥିଲେ । ତାଙ୍କର ପୁତ୍ର ଓଗତାଇ ଉତ୍ତର ଅଭିମୁଖେ ସୈନ୍ୟମାନଙ୍କୁ ପଠାଇଥିଲେ । ତାଙ୍କର ପରଲୋକ ଫଳରେ ମଙ୍ଗୋଲନେତା ମାନେ ବିଶେଷ ସୁବିଧା ପାଇପାରିଥିଲେ ।

କୁବଲାଇ ନୂତନ ନେତା ହେଲେ । ସେ ଚେଙ୍ଗିସ ଖାଁର ନାତି ଥିଲେ । କୁବଲାଇ ଚୀନ ଜୟ କରିଥିଲେ । ମାର୍କୋପୋଲ ତାଙ୍କର ଦରବାରରେ ଉପସ୍ଥିତ ଥିବା ବିଷୟରେ ଇତିହାସ ସୂଚେଇ ଦେଇଥାଏ ।

**ଏକ୍ୟୁନାସ୍‌ଙ୍କ ଗ୍ରନ୍ଥ ରଚନା**

ଥୋମାସ ଏକ୍ୟୁନାସ୍ ୧୨୨୫ ଖ୍ରୀଷ୍ଟାବ୍ଦରେ ନେପଲସର ଏକ୍ୟୁନୋଠାରେ ଜନ୍ମ ଗ୍ରହଣ କରିଥିଲେ । ସେ ଖ୍ରୀଷ୍ଟିୟ ମହାପୁରୁଷ ଡମିନିକ୍ ସମ୍ପ୍ରଦାୟ ଭିକ୍ତ ହୋଇଥିଲେ । ତାଙ୍କର କର୍ମଭୂମି ଥିଲା କୋଲୋନ୍ରେ । ସେ ଖ୍ରୀଷ୍ଟିୟ ଗବ୍ୟରେ ବିଶିଷ୍ଟ ଗବେଷକ ହୋଇପାରିଥିଲେ । ୧୨୬୪ ଖ୍ରୀଷ୍ଟାବ୍ଦରେ ସେ 'ସୁମା ଥିଓଲୋଜିକା' ଆରମ୍ଭ କରିଥିଲେ । ୧୨୨୪ ଖ୍ରୀଷ୍ଟାବ୍ଦରେ ତାଙ୍କର ପରଲୋକ ଘଟିଥିଲା ।

**ଇଂଲଣ୍ଡର ପ୍ରଥମ ପାର୍ଲିଆମେଣ୍ଟ**

ନୋରମାନ (ନରମ୍ୟାଣ୍ଡି ଅଧିବାସୀ)ଙ୍କ ଆକ୍ରମଣ ପୂର୍ବରୁ ସାକ୍ସୋନମାନଙ୍କର କୌଣସି ପାର୍ଲିଆମେଣ୍ଟ ନଥିଲା । ମାତ୍ର ଓ୍ୱିଟାନାଜିମୋଟ ରହିଥିଲା । ଏଥିରେ ରଜା ଜନ୍ ସାମନ୍ତମାନଙ୍କର ସ୍ୱାକ୍ଷର ନେଇ ପାରୁଥିଲେ ମାଗ୍ନା କାର୍ଟାରେ । ସାମନ୍ତମାନେ ନିଜ ଇଚ୍ଛାରେ କୌଣସି ନିଷ୍ପତ୍ତି ନେଇପାରୁ ନଥିଲେ ।

ଜନ୍‌ଙ୍କର ପୁତ୍ର ହେନେରି ତୃତୀୟ କ୍ଷମତାକୁ ଗଲେ । ସେ ରବିବର୍ଷରେ ଦେଶକୁ ଦେବାଳିଆ କରିଦେଲେ । ଏହାପରେ ସେ ସାମନ୍ତମାନଙ୍କ ପରାମର୍ଶରେ ଦେଶ ଶାସନ କଲେ । ସାମନ୍ତ ସାଇମନ ଡ ମୋଣ୍ଟଫୋର୍ଟ ୧୨୬୫ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରେ ପ୍ରଥମ ଥର ପାଇଁ ପାର୍ଲିଆମେଣ୍ଟ ଗଠନ କରାଇଥିଲେ । ରଜାଙ୍କୁ ପାର୍ଲିଆମେଣ୍ଟ ଶାସନ କାର୍ଯ୍ୟରେ ସାହାଯ୍ୟ ଦେଇ ଆସୁଥିଲା ।

**ରୋଜେର ବେକନ୍**

ରୋଜେର ବେକନ୍ ହେଉଛନ୍ତି ତ୍ରୟୋଦଶ ଶତାବ୍ଦୀର ଜଣେ ବିଶିଷ୍ଟ ବୈଜ୍ଞାନିକ । ସେ ପାଶ୍ଚାତ୍ୟରେ ବାରୁଦ ଉଦ୍ଭାବନ କରିଥିଲେ । ତିନିଖଣ୍ଡି ପୁସ୍ତକ ସେ ଲେଖି ସୁଖ୍ୟାତି ଅର୍ଜନ କରି ଯାଇଛନ୍ତି । ଏହି ପୁସ୍ତକଗୁଡ଼ିକ ହେଉଛି— ଓପୁସ୍ ମାଜୁସ, ଓପୁସ ମିନୁସ ଏବଂ ଓପୁସ୍ ଟେର୍ଟିୟମ ।

**ମାର୍କୋପୋଲଙ୍କ ଯାତ୍ରା**

ନିକୋଲୋ ଏବଂ ମାଫିଓ ପୋଲୋ ନାମରେ ଦୁଇଜଣ ଭିନିସୀୟ ବ୍ୟବସାୟୀ

ପ୍ରାଚ୍ୟ ଅଭିଯାନରେ ବାହାରିଲେ ସେମାନେ ମନ ମଧ୍ୟରେ କଳ୍ପନା ଜଳ୍ପନା କରିଥିଲେ ବାଣିଜ୍ୟ ସକାଶେ ନୂତନ ଅଞ୍ଚଳର ସନ୍ଧାନ ହିଁ ପାଇପାରିବେ । ସେମାନେ ଶେଷରେ କୁବଲାଇ ଖାଁଙ୍କ ଦରବାରରେ ଉପସ୍ଥିତ ହେଲେ । କୁବଲାଇ ଖାଁ ସେମାନଙ୍କୁ ସହାନୁଭୂତି ଦେଖାଇଥିଲେ । ସେମାନେ ୧୨୭୧ ଖ୍ରୀଷ୍ଟାବ୍ଦରେ ପ୍ରାଚ୍ୟ ଅଭିମୁଖରେ ଯାତ୍ରା କରିଥିଲେ । ଏହି ଯାତ୍ରାରେ ନିକୋଲୋଙ୍କ ସତର ବର୍ଷର ପୁତ୍ର ମାର୍କୋ ସହଯାତ୍ରୀ ହୋଇଥିଲେ ।

କୁବଲାଇ ଖାଁଙ୍କର ପେକିଙ୍ଗ ଦରବାରରେ ଏହି ଅଭିଯାତ୍ରୀ ଦଳ ଉପସ୍ଥିତ ହେଲେ । କୁବଲାଇ ଖାଁ ମାର୍କୋ ଉପରେ ସନ୍ତୁଷ୍ଟ ହୋଇଥିଲେ । ଅଭିଯାତ୍ରୀ ଦଳ ଦରବାରରେ ୧୨୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସେମାନେ ରହିବେ । ପରିଶେଷରେ ପାଶ୍ଚାତ୍ୟ ଯାତ୍ରା କଲେ । ୧୨୯୫ ଖ୍ରୀଷ୍ଟାବ୍ଦରେ ସେମାନେ ଭେନିସରେ ପହଞ୍ଚିଥିଲେ । ମାର୍କୋ ଜଳ ଯୁଦ୍ଧରେ ବନ୍ଦୀ ହେଲେ । ସେ ବନ୍ଦୀ ଅବସ୍ଥାରେ ସାହିତ୍ୟ ସୃଷ୍ଟି କରିଥିଲେ । ୧୩୨୪ ଖ୍ରୀଷ୍ଟାବ୍ଦରେ ତାଙ୍କର ପରଲୋକ ଘଟିଥିଲା ।

### ଯନ୍ତ୍ର ମାନବ ଖେଳି ପାରିବ

ଦକ୍ଷିଣ ପଶ୍ଚିମ ଇଂଲଣ୍ଡର ବ୍ରିଷ୍ଟଲ ବିଶ୍ୱବିଦ୍ୟାଳୟରେ କେତେଜଣ ବୈଜ୍ଞାନିକ ଜଣେ ଯନ୍ତ୍ର ମଣିଷକୁ ନିର୍ମାଣ କରିଅଛନ୍ତି । ଏହି ମଣିଷ ବିଲିଅର୍ଡ ଖେଳ ପାଇଁ ନିର୍ଦ୍ଧାରିତ ନୀତିନିୟମଗୁଡ଼ିକ ଶିଖିପାରିଛି । ତାକୁ ବଲ୍‌ର ଗତି ଆଉ ସ୍ଥିତି ସମ୍ପର୍କରେ ମଧ୍ୟ ଶିକ୍ଷା ଦିଆଯାଇ ପାରୁଛି । ଗୋଟିଏ ବର୍ଷ ମଧ୍ୟରେ ଏହା ପ୍ରଥମ ଥର ପାଇଁ ବିଲିଅର୍ଡ ଖେଳ ଖେଳିପାରିବ ।

### ସାର ଉତ୍ପାଦନରେ ରେକର୍ଡ

ରାଷ୍ଟ୍ରୀୟ ରସାୟନ ଓ ସାର ଲିମିଟେଡ ୧୯୮୪–୮୫ ମସିହାରେ ୩୨୪ ୨୦୦ ନିୟୁତ ଟନ୍ ନାଇଟ୍ରୋଜେନ ଓ ୪୭୩୦୯୦ ନିୟୁତ ଟନ୍ ୟୁରିଆ ସାର ଉତ୍ପାଦନ କରି ରେକର୍ଡ ସୃଷ୍ଟି କରିପାରିଛି ।

### କୁକୁରର ଚିଠି ଯାଞ୍ଚ

ରାଷ୍ଟ୍ରପତି ଓ ପ୍ରଧାନ ମନ୍ତ୍ରୀଙ୍କ ନାମରେ ଆସୁଥିବା ଚିଠିପତ୍ର ଡାକ ଘରର ଏକ ବିଶେଷ କକ୍ଷରେ ରଖାଯାଇଥାଏ । ସେହି କକ୍ଷରେ ବିସ୍ଫୋରକ ପଦାର୍ଥର ସନ୍ଧାନ ପାଇଁ ବ୍ୟବସ୍ଥା କରାଯାଏ । କୁକୁରମାନେ ଚିଠିପତ୍ରକୁ ଶୁଙ୍ଘି ଯାଞ୍ଚ କରିଥାନ୍ତି ।

### ଦେଶରେ ବେଙ୍ଗ ସଂଖ୍ୟା ହ୍ରାସ

ବିଦେଶକୁ ବେଙ୍ଗ ରପ୍ତାନି କରଯାଉ ଥିବାରୁ ଦେଶରେ ଗଣା ଠିଗିରିନା ଓ ରଣା ହେକୁ। ହେକ୍ଲି ବେଙ୍ଗ ସଂଖ୍ୟା ହ୍ରାସ ପାଇବାରେ ଲାଗିଛି । ଫଳରେ ଧାନ ଫସଲ ହାନୀର ଆଶଙ୍କା ଦେଖା ଯାଉଛି ।

### ପିଗ୍‌ମୀମାନଙ୍କଠୁଁ ବାଙ୍ଗର ଲୋକ ଥିଲେ

ଆଫ୍ରିକାର ପିଗ୍‌ମୀମାନେ ସବୁଠାରୁ ବେଶୀ ବାଙ୍ଗର ବ୍ୟକ୍ତି । ସେମାନଙ୍କ-ଠାରୁ ଅଧିକ ବାଙ୍ଗର ମଣିଷଙ୍କ ବିଷୟରେ ହିଁ ପ୍ରତ୍ନ ତତ୍ତ୍ୱବିତ୍‌ମାନେ ତଥ୍ୟ ପାଇ ପାରିଛନ୍ତି । ପେରୁର ମରୁଭୂମି ଅଞ୍ଚଳରେ ଆଦିମ ଅଧିବାସୀମାନେ ହେଉଛନ୍ତି ପିଗ୍‌ମୀଙ୍କ-ଠାରୁ ଉଚ୍ଚତାରେ ଯଥେଷ୍ଟ କମ୍ ।

### ତେରଶି ମିଟର ଲମ୍ବା ସାପ

ଫରାସୀ ବୈଜ୍ଞାନିକ ଡ଼ା କୁକ୍ ରୋଜେଟ୍ ଏକ ବିରାଟକାୟ ପଥରର ସାପ ଆବିଷ୍କାର କରିଛନ୍ତି । ଏହି ପ୍ରକାର ସାପ ୫୦ ନିୟୁତ ବର୍ଷ ତଳେ ଜୀବିତ ଥିଲେ । ଏବେର ପିଥନ କିମ୍ବା ଆନାକୋଣ୍ଡା ସାପ ଏହି ବିରାଟକାୟ ସାପର ବଂଶଧର ବୋଲି ଅନୁମାନ କରାଯାଉଛି ।

### ଦ୍ୱିତୀୟ ଅଭିଯାନର ଘୋଷଣା

ପ୍ରଥମ ଅଭିଯାନ ସମୟରେ ଜେରୁଜେଲମର ପତନ ହେଲାବେଳେ ଜେରୁ-ଜେଲମରେ ଲାଟିନ ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । ଏହି ରାଜ୍ୟ ଦୀର୍ଘଦିନ ଧରି ପ୍ରତିଷ୍ଠିତ ହୋଇ ନିରାପଦରେ ରହିଥିଲା । ଏହି ରାଜ୍ୟର କେତେକାଂଶ ମୁସଲିମମାନେ ପୁଣରେ ଅଧିକାର କରିନେଲେ । ୧୧୦୪ ଖ୍ରୀଷ୍ଟାବ୍ଦର ବଡ ଦିନରେ ଇଡେସାର ପତନ ହେଲା । ଏହାପରେ ଦ୍ୱିତୀୟ ଅଭିଯାନର ସ୍ଫୁଲିଙ୍ଗ ଦେଖାଦେଇଥିଲା ।

ପୋପ ଇଉଜିନେୟସ୍ ତୃତୀୟଙ୍କ ଦ୍ୱାରା ଏ ଦିଗରେ ଉତ୍ସାହିତ କରଯାଇଥିଲା । ଫ୍ରାନ୍ସର ରାଜା ଅଷ୍ଟମ ଲୁଇ ଏବଂ ଜର୍ମାନ ସମ୍ରାଟ କୋନାର୍ଡ ତୃତୀୟ ସମର୍ଥନ ଦେଇ-ଥିଲେ । ଅଭିଯାନକାରୀମାନେ ଏକତ୍ରିତ ହୋଇଥିଲେ ମାତ୍ର କୋନାର୍ଡଙ୍କର ସୈନ୍ୟ-ମାନେ ହୋଲିକିବ୍ୟାଣ୍ଡରେ ପହଞ୍ଚି ପାରିଲେ ନାହିଁ । ପଥରେ ରହିଯାଇ ଦକ୍ଷିଣ ଜର୍ମାନ ସୈନ୍ୟଙ୍କର ମୁକାବିଲା କଲେ । ଇଂଲଣ୍ଡ ଏବଂ କ୍ଷୁଦ୍ର ଦେଶଗୁଡ଼ିକର ଅଭିଯାନକାରୀମାନେ

ପଥରେ ଲିସବନ ଲୁଣ୍ଠନ କରିନେଲେ । ଡାମାସକସ୍ ସେମାନେ ଦଖଲ କରି ନେଇ-ଥିଲେ ।

**ସମ୍ରାଟ ଫ୍ରେଡେରିକ୍ ପ୍ରଥମ**

୧୧୨୪ ଖ୍ରୀଷ୍ଟାବ୍ଦରେ ଫ୍ରେଡେରିକ୍ କ୍ଷମତାଶାଳୀ ହୋହେନଷ୍ଟଫେନ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ୧୧୪୭ରେ ସେ ସ୍ୱାବିଆର ଡ୍ୟୁକ୍ ହୋଇ ପାରିଥିଲେ । ବିପଦ ପୂର୍ଣ୍ଣ ଦ୍ୱିତୀୟ ଅଭିଯାନରେ ସେ କର୍ଣ୍ଣାଡ୍ ୩ୟଙ୍କ ସହିତ ମିଳିତ ହେଲେ । କର୍ଣ୍ଣାଡ ଫ୍ରେଡେରିକ୍‌ଙ୍କ ଦକ୍ଷତାରେ ମୁଗ୍ଧ ହୋଇ ଜର୍ମାନର ପରବର୍ତ୍ତୀ ଶାସକ ହେବା ପାଇଁ ସୁପାରିଶ କରିଥିଲେ । ୧୧୫୨ରେ ଫ୍ରେଡେରିକ ଫ୍ରେଡେରିକ ୧ମ ନାମ ଧାରଣ କରି ଏକ୍ସ—ଲା ଚାପେଲ୍ ଠାରେ ଅଭିଷିକ୍ତ ହୋଇଥିଲେ । ସେ ପବିତ୍ର ରୋମୀୟ ସାମ୍ରାଟ ପଦରେ ରାଜ୍ୟର ଅଗ୍ରଗତି କରାଇଥିଲେ । ସେ ଛଅଥର ଇଟାଲୀ ଅଭିଯାନ ଚଳାଇଥିଲେ ।

**ହେନେରୀ ୨ୟଙ୍କ ସିଂହାସନ ଆରୋହଣ**

ହେନେରୀ ୨ୟ ତାଙ୍କର ମାତାଙ୍କ ଯୋଗେ ଇଂଲଣ୍ଡର ସିଂହାସନ ଆରୋହଣ କଲେ । ସିଂହାସନ ଆରୋହଣର ଦୁଇବର୍ଷ ପରେ ବିବାହ ସୂତ୍ରରେ ଫ୍ରାନସର ଦକ୍ଷିଣ ପଶ୍ଚିମାଂଶ ଯୌତୁକ ପାଇ ପାରିଥିଲେ । ହେନେରୀ ୨ୟ ୧୧୫୫ ଖ୍ରୀଷ୍ଟାବ୍ଦରେ ଆୟାରଲଣ୍ଡ ଆକ୍ରମଣ କରିବାକୁ ଉଦ୍ୟମ ଚଳାଇଲେ । ମାତ୍ର ଉଦ୍ୟମ ସଫଳ ହୋଇ ପାରିଲା ନାହିଁ । ସେ ଇଂରେଜ ଅଇନ ବ୍ୟବସ୍ଥାର ସଂସ୍କାର ଆରମ୍ଭ କରିଥିଲେ ।

**ପ୍ୟାରିସ୍ ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା**

ପ୍ୟାରିସ ବିଶ୍ୱବିଦ୍ୟାଳୟ ହେଉଛି ଇଉରୋପର ପ୍ରାଚୀନତମ ବିଶ୍ୱବିଦ୍ୟାଳୟ । ମଧ୍ୟ ଯୁଗୀୟ ଶିକ୍ଷା ପାଇଁ ଏହା ବେଶ୍ ପ୍ରସିଦ୍ଧି ଅର୍ଜନ କରିଥିଲା । ବିଶ୍ୱବିଦ୍ୟାଳୟର ପ୍ରାଚୀନ ନାମ ଥିଲା 'ଷ୍ଟଡ଼ୟମ' । ପରବର୍ତ୍ତୀ କାଳରେ ଏହାର ନାମକରଣର ପରିବର୍ତ୍ତନ କରାଯାଇଥିଲା । ଏହି ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ୧୧୫୦ ଖ୍ରୀଷ୍ଟାବ୍ଦରେ ହୋଇଥିଲା । ୧୨୦୦ ଖ୍ରୀଷ୍ଟାବ୍ଦରେ ରାଜା ଫିଲିପ୍ ୨ୟ ବିଶ୍ୱବିଦ୍ୟାଳୟକୁ କେତେକ ସୁବିଧା ସୁଯୋଗ ଦେଇଥିଲେ । ୧୨୧୫ ଖ୍ରୀଷ୍ଟାବ୍ଦରେ ପୋପ ଇନୋସେଣ୍ଟ ୩ୟ ମଧ୍ୟ ପ୍ୟାରିସ ବିଶ୍ୱବିଦ୍ୟାଳୟକୁ ସହଯୋଗ ଆଦି ପ୍ରଦାନ କରିଥିଲେ ।

**ଭାରତରେ ୨୫୦ଟି ସର୍କସ**

ଭାରତବର୍ଷରେ ୨୫୦ଟି ସର୍କସ ଦଳ ରହିଛି । ଏହି ସର୍କସଗୁଡ଼ିକ ମଧ୍ୟରୁ ୧୧ଟି ଦଳ ପ୍ରଥମ ଶ୍ରେଣୀର ।

## ଫୁଟ୍‌ପାଥ ପୋଷାକରୁ ରୋଗ ହୁଏ

ଫୁଟ୍‌ପାଥ୍ ପୋଷାକ ପିନ୍ଧଲେ ସାଙ୍ଘାତିକ ରୋଗ ହେଉଥିବାର ଜଣାପଡ଼ୁଛି । ବିଶେଷତଃ ବିଦେଶୀ ସାର୍ଟ ପ୍ୟାଣ୍ଟ ମାଧ୍ୟମରେ ଏହି ମାରାତ୍ମକ ରୋଗ ବ୍ୟାପୁଛି ।

## ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା

ଆଧୁନିକ ଉପାୟରେ ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟଟି ପ୍ରତିଷ୍ଠା ହୋଇଥିଲା । ୧୧୬୭ ଖ୍ରୀଷ୍ଟାବ୍ଦରେ ଏହା ବିଶ୍ୱବିଦ୍ୟାଳୟରେ ପରିଣତ ହେଲା । ବହୁ ଛାତ୍ରଙ୍କୁ ଏହି ବିଶ୍ୱବିଦ୍ୟାଳୟ ଆକୃଷ୍ଟ କରିପାରିଥିଲା । ବିଶ୍ୱବିଦ୍ୟାଳୟ କଲେଜ ୧୨୪୯ରେ ଏବଂ ବାଲିଓଲି ୧୨୬୩ରେ ସ୍ଥାପିତ ହୋଇଥିଲା ।

କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଏହା ପରେ ପ୍ରତିଷ୍ଠିତ ହୋଇଥିଲା । ଅକ୍‌ସଫୋର୍ଡରୁ ୧୨୦୯ ଖ୍ରୀଷ୍ଟାବ୍ଦରେ କେତେକ ଛାତ୍ର ବହିଷ୍କୃତ ହୋଇ କେମ୍ବ୍ରିଜ ଯାଇଥିଲେ । ୧୨୧୪ରେ ଏହି ଛାତ୍ରମାନେ କେମ୍ବ୍ରିଜ ଫେରିବାକୁ ଅନୁମତି ପାଇଥିଲେ ।

## ଥୋମାସ ବେକେଟ୍ ହତ୍ୟାକାଣ୍ଡ

ଥୋମାସ ବେକେଟ୍ ଥିଓବାଲ୍‌ଡଙ୍କ ପରିବାରରେ ଯୋଗଦେଲେ । ଥିଓବାଲଡ କାଣ୍ଟରବରିର ଆର୍ଚ ବିସୋପ ହୋଇଥିଲେ । ପରିଶେଷରେ କାଥେଡ୍ରାଲର ଋନସେଲରେ ହେଲେ । ସେ ହେନେରୀ ୨ୟଙ୍କର ଅନ୍ତରଙ୍ଗ ବନ୍ଧୁ ହୋଇପାରିଥିଲେ । ୧୧୬୨ ଖ୍ରୀଷ୍ଟାବ୍ଦରେ ଥିଓବାଲଡଙ୍କ ପରଲୋକ ଘଟିଲା । ଥୋମାସ ବେକେଟ୍ ଏହା-ପରେ ଆର୍ଚ ବିସୋପ ହୋଇଥିଲେ ।

ହେନେରୀ ଚର୍ଚ୍ଚକୁ ନିଜ ଆୟତରେ ନେବାପାଇଁ ଋହିଁଥିଲେ । ମାତ୍ର ଆର୍ଚ୍ଚବିସୋପ ଏହି ଅବସରରେ ପରିବର୍ତ୍ତିତ ହୋଇଯାଇଥିଲେ ।

ଋରିଜଣ ନାଇଟ କାଣ୍ଟେରବରି ଯାଇ ଥୋମାସ ବେକେଟ୍‌ଙ୍କୁ ହତ୍ୟା କରିଥିଲେ । ଏହି ହତ୍ୟାକାଣ୍ଡ ଖ୍ରୀଷ୍ଟିୟ ଜଗତକୁ ଶୋକାଭିଭୂତ କରି ଦେଇଥିଲା । ପୋପ୍ ହେନେରୀଙ୍କୁ ଶୋକୋଚ୍ଛ୍ୱାସ ପାଇଁ କାଣ୍ଟେରବରିକୁ ତୀର୍ଥସ୍ଥାନରେ ପରିଣତ କରିବା ଲାଗି ପରାମର୍ଶ ଦେଇଥିଲେ ।

## ତୃତୀୟ ସାମରିକ ଅଭିଯାନ

ଦ୍ୱିତୀୟ ସାମରିକ ଅଭିଯାନ ପରେ ମୁସଲିମ ସୈନ୍ୟବାହିନୀ ଶକ୍ତିଶାଳୀ

ହୋଇ ଯାଇଥିଲା । ପରେ ପରେ ତୃତୀୟ ସାମରିକ ଅଭିଯାନ ଆରମ୍ଭ ହେଲା । ଇଂଲଣ୍ଡର ରିଚର୍ଡ ପ୍ରଥମ, ଜର୍ମାନୀର ଫ୍ରେଡେରିକ୍ ବାର୍ବାରୋସା ଏବଂ ଫ୍ରାନ୍ସର ଫିଲିପ୍ ଦ୍ୱିତୀୟ ଯୁଦ୍ଧ ପାଇଁ ଅଗ୍ରସର ହୋଇଥିଲେ । ପବିତ୍ର ଭୂମିପାଇଁ ସେମାନେ ପୃଥକ୍ ପୃଥକ୍ ଭାବରେ ଅଭିଯାନ ଚଳାଇଥିଲେ । ଫ୍ରେଡେରିକ୍ ବାର୍ବାରୋସା ପାଲେ- ଷ୍ଟାଇନରେ ପହଞ୍ଚିବା ପୂର୍ବରୁ ପରଲୋକ ଗମନ କରିଥିଲେ । ଫିଲିପ ମଧ୍ୟ ଅସୁସ୍ଥ ହୋଇ ଫ୍ରାନ୍ସ ଫେରିବାକୁ ବାଧ୍ୟ ହେଲେ । ଇଂଲଣ୍ଡର ରିଚର୍ଡ ଯୁଦ୍ଧରେ ନିୟୋଜିତ ରହି- ଥିଲେ । ଅଦମନୀୟ ସାହସିକତାର ପରିଚୟଦେଇ 'ସିଂହ-ହୃଦୟ' ଉପାଧି ପାଇଲେ । ସେ ଆକ୍ରେ ଏବଂ ଜାଫା ଜୟ କରିଥିଲେ । କିନ୍ତୁ ଜେରୁଜେଲମ ଅଧିକାର କରି ପାରିଲେ ନାହିଁ । ୧୧୯୨ ଖ୍ରୀଷ୍ଟାବ୍ଦରେ ସେ ନିଜ ଦେଶକୁ ଫେରିବା ପଥରେ ଜର୍ମାନୀରେ ବନ୍ଦୀ ହୋଇ ରହିଲେ । ସେ ୧୧୯୯ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କରିଥିଲେ ।

### ପ୍ୟାରିସ୍‌ର ନୋଟ୍ରେଡାମ କାଥେଡ୍ରାଲ୍

ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ଗୋଥିକ୍ ସ୍ଥାପତ୍ୟ ବିଦ୍ୟାର ଆରମ୍ଭ କରାଯାଇଥିଲା । ଏହାର ଉଦାହରଣ ହେଉଛି ନୋଟ୍ରେଡାମ କାଥେଡ୍ରାଲ । ଏହା ଦକ୍ଷିଣ ପଶ୍ଚିମ ପ୍ୟାରିସ୍‌ରେ ଅବସ୍ଥିତ । ଏହାର କାର୍ଯ୍ୟ ୧୧୬୪ ଖ୍ରୀଷ୍ଟାବ୍ଦରେ ଆରମ୍ଭ କରାଯାଇଥିଲା ଏବଂ ପୂର୍ବତନ ଚର୍ଚ୍ଚଗୁଡ଼ିକ ସହ ତାହାର ତୁଳନା ହେଉଥିଲା ।

### ମଧ୍ୟଯୁଗୀୟ ସାହିତ୍ୟ

ମଧ୍ୟଯୁଗରେ ଲାଟିନ୍ ଭାଷା ସମଗ୍ର ଇଉରୋପରେ ବ୍ୟବହାର କରାଯାଉଥିଲା । ଦ୍ୱାଦଶ ଶତାବ୍ଦୀରେ ଆଧୁନିକ ଇଉରୋପୀୟ ସାହିତ୍ୟର ସୃଷ୍ଟି ହୋଇଥିଲା ଏବଂ ଏହି ସମୟରେ ଦେଶରେ ସଙ୍ଗୀତର ପ୍ରସାର ହୋଇ ଆସିଥିଲା ।

୧୧୦୦ଟି ଫରାସୀ ମହାକାବ୍ୟ ଦ୍ୱାଦଶ ଶତାବ୍ଦୀରେ ରଚିତ ହୋଇଥିଲା । ମଧ୍ୟ- ଯୁଗୀୟ ମହାକାବ୍ୟଗୁଡ଼ିକ ବୀରତ୍ୱ କାହାଣୀ ଉପରେ ଭିତ୍ତି କରି ଲିଖିତ ହେଉଥିଲା ।

ଗାୟକ ଓ କବିମାନେ ସମଗ୍ର ଇଉରୋପ ଭ୍ରମଣକରି ସେମାନଙ୍କର ପୃଷ୍ଠପୋଷକ ସଂଗ୍ରହ କରୁଥିଲେ । ମଧ୍ୟଯୁଗୀୟ ସାହିତ୍ୟ ବେଶ୍ ପ୍ରତିଷ୍ଠିତ ଥିଲା ଏବଂ ତାହାର ପ୍ରସାର ଲାଭ କରିଥିଲା ।

### ଚତୁର୍ଥ ସାମରିକ ଅଭିଯାନ

୧୧୯୮ ଖ୍ରୀଷ୍ଟାବ୍ଦରେ ଇନୋସେଣ୍ଟ ୩ୟ ପୋପ୍ ହୋଇପାରିଥିଲେ । ସେ ନୂତନ ଅଭିଯାନ ଚଳାଇବା ପାଇଁ ଚାହାଁଥିଲେ । ପ୍ରକୃତରେ ଏହି ଅଭିଯାନର ନେତୃତ୍ୱ ନେଇଥିଲେ ବୋନିଫେସ୍ ।

ମୋଣ୍ଟଫେରଟ୍‌ଙ୍କ ସୈନ୍ୟମାନେ ପବିତ୍ର ଭୂମିରେ ପହଞ୍ଚି ପାରିଲେ ନାହିଁ । ଭିନିସୀୟମାନଙ୍କ ସହିତ ଖ୍ରୀଷ୍ଟୀୟ ନଗର କନଷ୍ଟାଣ୍ଟିନୋପଲ ଦଖଲ କରିବା ଏବଂ ଲୁଟ୍ କରିବା ସକାଶେ ସେ ଏକ ଚୁକ୍ତି କରିଥିଲେ । ତାପରେ ସେମାନେ ସାମରିକ ଅଭିଯାନ ଆରମ୍ଭ କଲେ । ଫ୍ଲାଣ୍ଡେର୍‌ସର ଜାଉଣ୍ଟ ବାଲଡ୍‌ଉ୍ଇନ ପ୍ରାଚ୍ୟର ପ୍ରଥମ ଲାଟିନ ସମ୍ରାଟ୍‌ରୂପେ ପରିଚିତ ଥିଲେ । ସେ ସମୟରେ ଭେନିସ୍ କନଷ୍ଟାଣ୍ଟିନୋପଲର ଏକ ଅଂଶ ହୋଇଥିଲା ।

## ଟେମୁଜିନ୍‌ଙ୍କ ଚେଙ୍ଗିସ୍ ଖାଁ । ନାମକରଣ

ଚୀନ୍‌ରେ ବର୍ବର ସମ୍ପ୍ରଦାୟମାନଙ୍କୁ ହଟାଇ ଦେବାପାଇଁ ଚେଷ୍ଟା କରାଯାଉଥିଲା । ଏମାନେ ମଧ୍ୟ ହିଂସ୍ର ଥିଲେ । ଏହି ସମ୍ପ୍ରଦାୟଗୁଡ଼ିକ ମଧ୍ୟରୁ ମୋଙ୍ଗଲମାନେ ପରସ୍ପର ମଧ୍ୟରେ ସଂଗ୍ରାମ ଚଳାଇଥିଲେ ।

୧୧୬୨ ଖ୍ରୀଷ୍ଟାବ୍ଦ ମୋଙ୍ଗଲ ସମ୍ପ୍ରଦାୟରେ ଟେମୁଜିନ ଜନ୍ମ ଗ୍ରହଣ କଲେ । ସେ ତାଙ୍କର ପିତାଙ୍କ ଉତ୍ତରାଧିକାରୀ ଭାବେ ସର୍ଦ୍ଦାର ହେଲେ ଏବଂ ପଡୋଶୀ ସମ୍ପ୍ରଦାୟଗୁଡ଼ିକ ସହ ଯୁଦ୍ଧ ଆରମ୍ଭ କରିଦେଲେ । ଦୀର୍ଘ କାଳ ଧରି ଯୁଦ୍ଧ ଚଳାଇ ଅନ୍ୟ ସମ୍ପ୍ରଦାୟଗୁଡ଼ିକ ନିଜ ଅଧୀନକୁ ଆଣିଥିଲେ । ଏହାପରେ ସେ ନିଜକୁ ଚେଙ୍ଗିସ୍ ଖାଁ ଭାବରେ ପରିଚିତ କରାଇଥିଲେ । ପାଞ୍ଚବର୍ଷ ମଧ୍ୟରେ ସେ ୨୦୦୦୦୦ ଅଶ୍ୱାରୋହୀଙ୍କୁ ନେଇ ଉତ୍ତର ଚୀନ ଅଧିକାର କରିନେଲେ । ଚେଙ୍ଗିସ୍ ଖାଁ ୧୨୨୭ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କରିଥିଲେ ।

## ଭାରତରେ ଦଶଜଣରେ ଜଣେ ମସ୍ତିଷ୍କ ରୋଗୀ

ଭାରତରେ ସର୍ବମୋଟ ୨୦ ଲକ୍ଷ ବ୍ୟକ୍ତି ମସ୍ତିଷ୍କ ରୋଗ ଭୋଗୁଛନ୍ତି ଏବଂ ଏହି ହିସାବ ଅନୁଯାୟୀ ପ୍ରତି ଦଶ ଜଣରେ ଜଣେ ବିକୃତ ମସ୍ତିଷ୍କ ବୋଲି ସର୍ବେରୁ ଜଣାପଡ଼ୁଛି ।

## ବିଶ୍ବରେ ପ୍ରତିବର୍ଷ ୪୦ ଲକ୍ଷ କର୍କଟରୋଗୀଙ୍କର ମୃତ୍ୟୁ

ବିଶ୍ୱରେ ପ୍ରତିବର୍ଷ କର୍କଟ ରୋଗରେ ୪୦ ଲକ୍ଷ ବ୍ୟକ୍ତି ପ୍ରାଣତ୍ୟାଗ କରୁଛନ୍ତି । ଏହା ମଧ୍ୟରୁ ବିକାଶଶୀଳ ରାଷ୍ଟ୍ରର କର୍କଟ ରୋଗୀ ୨୦ ଲକ୍ଷ ମୃତ୍ୟୁବରଣ କରୁଥିବା ଜଣାଯାଉଛି ।

## ୧୯୮୪ରେ ପୁରୀ ପର୍ଯ୍ୟଟକ

ଗତବର୍ଷରେ ପୁରୀ ପର୍ଯ୍ୟଟକଙ୍କର ସଂଖ୍ୟାଥିଲା ୫ ଲକ୍ଷ ୨୨ ହଜାର ୨୮୫ ଜଣ । ଏମାନଙ୍କ ମଧ୍ୟରୁ ବିଦେଶୀ ରହିଲେ ୬୮୨୪ ଜଣ ।

## ପ୍ରାଚୀନତମ ମୁଦ୍ରଣ ଅକ୍ଷର

ସେଙ୍ଗ୍‌ଜୁ ବିଶ୍ୱବିଦ୍ୟାଳୟର ପ୍ରତ୍ନତାତ୍ତ୍ୱିକମାନେ 'ହଙ୍ଗଡକ ମନ୍ଦିର' ନାମରେ ଏକ ପ୍ରାଚୀନ ବୌଦ୍ଧ ମନ୍ଦିରର ଭଗ୍ନାବଶେଷ ଆବିଷ୍କାର କରିଛନ୍ତି । ପଞ୍ଚଦଶ ଶତକରେ ଜୋହାନସ୍ ଗୁଟେନବର୍ଗ ଧାତବ ଅକ୍ଷରମାନ ବ୍ୟବହାର କରି ପୁସ୍ତକ ମୁଦ୍ରଣ ବ୍ୟବସ୍ଥାର ଆବିଷ୍କାର କରିବାର ୬୦ବର୍ଷ ପୂର୍ବରୁ ଏହି ବୌଦ୍ଧ ମନ୍ଦିରର ପ୍ରକାଶନୀ ସଂସ୍ଥା ଏଭଳି ଟାଇପ୍‌ମାନ ବ୍ୟବହାର କରିଥିଲେ । ୬୦୦ବର୍ଷରୁ ଅଧିକ କାଳ ପୂର୍ବେ ଧାତବ ଟାଇପମାନ ବ୍ୟବହାର କରଯାଇ ଏଠାରେ ବିଶ୍ୱର ପ୍ରାଚୀନତମ ପୁସ୍ତକର ମୁଦ୍ରଣ ହୋଇଥିଲା । ଐତିହାସିକ ନଥିପତ୍ର ଅନୁଯାୟୀ ପ୍ରାଚୀନ ବୌଦ୍ଧ ଗ୍ରନ୍ଥ 'ଚିକିଚି ସିମେଚେ ୟୋକୋଲ୍' ହଙ୍ଗଡକ ମନ୍ଦିରରେ ବିଗତ ୧୩୭୭ ମସିହାରେ ଧାତବ ଅକ୍ଷରମାନ ବ୍ୟବହାର କରହୋଇ ମୁଦ୍ରିତ ହୋଇଥିଲା ।

## ହସିବା ଉପରେ ନିଷେଧାଜ୍ଞା

ତାଇୱାନର ଏକ କମ୍ପାନୀ ବିଳତରେ ଥିବା ତାହାର କାରଖାନାର କର୍ମଚାରୀ ମାନଙ୍କ ହସିବା ଉପରେ ନିଷେଧାଜ୍ଞା ଜାରୀ କରିଛନ୍ତି । ଶ୍ରମିକ ସଙ୍ଗଠନକୁ ସ୍ୱୀକୃତି ପ୍ରଦାନ କରିନଥିବା ଇଲେକ୍‌ଟ୍ରୋନିକ୍‌ସ ବ୍ୟବସାୟ ପ୍ରତିଷ୍ଠାନ ଟାଟୁଂ ଜାରୀକରିଥିବା ଏକ ନିର୍ଦ୍ଦେଶନାମାରେ କର୍ମଚାରୀମାନେ କାର୍ଯ୍ୟ କରୁଥିବା ବେଳେ ଖେଳି ପାରିବେ ନାହିଁ କିମ୍ବା ହସି ପାରିବେ ନାହିଁ ବୋଲି ସୂଚନା ଦିଆହୋଇଛି ।

## ଲ୍ୟାଙ୍ଗଲ୍ୟାଣ୍ଡଙ୍କ ପିଏରସ୍ ପ୍ଲୋମ୍ୟାନ୍ ରଚନା

ମଧ୍ୟଯୁଗୀୟ ଇଂଲଣ୍ଡରେ ବିଶିଷ୍ଟ ପୁସ୍ତକ ହେଉଛି 'ଦି ଭିଜିଅନ ଅଫ ଉଲିୟମ କନସର୍ଣ୍ଣିଙ୍ଗ ପିଏରସ୍ ପ୍ଲୋମ୍ୟାନ' ଏହା ଉଇଲିୟମ ଲ୍ୟାଙ୍ଗଲ୍ୟାଣ୍ଡଙ୍କ ଦ୍ୱାରା ଲିଖିତ ହୋଇଥିଲା । ଏଥିରେ ଚତୁର୍ଦ୍ଦଶ ଶତାବ୍ଦୀର ଇଂଲଣ୍ଡର ଗ୍ରାମ୍ୟ ଜୀବନ ବିଷୟରେ ବର୍ଣ୍ଣିତ ହୋଇଛି ।

## ହାନସ ମାନଙ୍କର ଉତ୍ଥାନ

ଦ୍ୱାଦଶ ଶତାବ୍ଦୀରେ ବେଲଟିକ ସାଗର ଓ ଉତ୍ତର ଉପକୂଳରେ ଉତ୍ତର ଇଉରୋପର ବିଶିଷ୍ଟ ସହରଗୁଡ଼ିକ ମଧ୍ୟରେ ବାଣିଜ୍ୟରେ ଦ୍ୱନ୍ଦ୍ୱ ଲାଗିରହିଥିଲା । କେତେକ ସହରବାସୀ ଉପଲବ୍‌ଧି କଲେ ଯେ, ଗୋଟାଏ ଇଉନିୟନ ଗଠନ କରିଗଲେ ବିଦେଶୀରାଷ୍ଟ୍ର ସହିତ ସହଜରେ ବାଣିଜ୍ୟ କାରବାର ଚଳାଇ ପାରିବ । ଏହି ଇଉନିୟନରେ ସଦସ୍ୟମାନଙ୍କୁ ହାନସ ବୋଲି କୁହାଯାଉଥିଲା ।

୧୩୫୬ ଖ୍ରୀଷ୍ଟାବ୍ଦରେ ହାନସମାନେ ମିଳିତ ହେଲେ । ପରେ ପରେ ଧନିକ-ଶ୍ରେଣୀରେ ପରିଣତ ହେବା ସଙ୍ଗେ ସଙ୍ଗେ ଶକ୍ତିଶାଳୀ ହୋଇ ପାରିଥିଲେ ।

ଏହି ଅବସରରେ ହାନସ ବଣିକମାନେ ଇଂଲଣ୍ଡରେ ବସବାସ କରିବାକୁ ଆରମ୍ଭ କଲେ । ରିଚାର୍ଡ ୩ୟଙ୍କ ଦ୍ୱାରା ସେମାନେ ଅନେକ ସୁବିଧା ସୁଯୋଗ ପାଇଥିଲେ ।

**ପେଟ୍ରାର୍କଙ୍କର କାଣ୍ଟୋନିଏର ରଚନା**

ଫ୍ରାନସିସ୍କୋ ପେଟ୍ରାର୍କ ୧୩୬୨ରେ ବାସ କରିବାପାଇଁ ଚାଲିଗଲେ । ସେଠାରେ ସେ ସନେଟ ଲେଖିଥିଲେ । ପେଟ୍ରାର୍କ କାଣ୍ଟୋନିଏର ପୁସ୍ତକ ରଚନାପାଇଁ ବିଶ୍ୱବିଖ୍ୟାତ ହୋଇଥିଲେ ।

**ମିଙ୍ଗ ସାମ୍ରାଜ୍ୟ ପ୍ରତିଷ୍ଠା**

ଖାଁଙ୍କ ଦରବାରରୁ ଫେରି ଆସିଥିଲେ ପୋଲ-ପରିବାର । ଏହି ସମ୍ବାଦ ବ୍ୟବସାୟୀ ଏବଂ ଧର୍ମପ୍ରଚାରକଙ୍କ ମଧ୍ୟରେ ବ୍ୟାପିଯାଇଥିଲା । ଯେଉଁବେଳେ ମୋଙ୍ଗଲ ସାମ୍ରାଜ୍ୟ ଭୁଷୁଡ଼ିପଡ଼ିଲା, ସେତେବେଳେ ବାଣିଜ୍ୟ-ପଥ କଷ୍ଟକର ହୋଇଥିଲା ।

୧୩୮୬ ଖ୍ରୀଷ୍ଟାବ୍ଦରେ ଚୀନରେ ମିଙ୍ଗ ସାମ୍ରାଜ୍ୟ ଶାସନ ଆରମ୍ଭ ହେଲା । ପ୍ରଥମ ସମ୍ରାଟ ହେଲେ ହୁଙ୍ଗ୍ ୟୁ । ମିଙ୍ଗ ସାମ୍ରାଜ୍ୟ ୧୬୪୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସନ ଚଳାଇ ଆସିଥିଲା । ରାଷ୍ଟ୍ର ଶୃଙ୍ଖଳିତ ଏବଂ ଉନ୍ନତ ହେବାରେ ଲାଗିଲା । ନାନକିଙ୍ଗଠାରେ ରାଜଧାନୀ ପ୍ରତିଷ୍ଠିତ ହେଲା । ଏହି ସାମ୍ରାଜ୍ୟର ତୃତୀୟ ସମ୍ରାଟ ୟଙ୍ଗଲୋ ହେଉଛନ୍ତି ମହାନ୍ ନିର୍ମାତା ତାଙ୍କର ଶାସନକାଳରେ ମନ୍ଦିର ଓ ପାଗୋଡ଼ା ଆଦି ନିର୍ମିତ ହୋଇଥିଲା । ୧୫୧୪ ଖ୍ରୀଷ୍ଟାବ୍ଦରେ ଇଉରୋପୀୟମାନେ ଚୀନ୍‌ରେ ଉପସ୍ଥିତ ହୋଇଥିଲେ । ପର୍ତ୍ତୁଗୀଜ-ମାନେ ସର୍ବପ୍ରଥମେ ଚୀନକୁ ଆସିଥିଲେ ।

**ଜନ ୱିକ୍ଲିଫ ଏବଂ ଲୋଲାର୍ଡ**

ଜନ ୱିକ୍ଲିଫ ହେଉଛନ୍ତି ଜଣେ ଇଂରେଜ ଧର୍ମସଂସ୍କାରକ । ସେ ୧୩୨୪ ଖ୍ରୀଷ୍ଟାବ୍ଦରେ ୟର୍କସାୟାର ର ହିପସୱେଲଠାରେ ଜନ୍ମଗ୍ରହଣ କରିଥିଲେ । ୧୩୬୦ ଖ୍ରୀଷ୍ଟାବ୍ଦରେ ଅକସଫୋର୍ଡର ବାଲିଓଲ କଲେଜରେ ଅଧ୍ୟାପନ କରୁଥିଲେ । ଏହାପରେ ୧୩୭୪ ଖ୍ରୀଷ୍ଟାବ୍ଦରୁ ସେ ଧର୍ମଯାଜକ ଭାବରେ ଲୁଟରୱର୍ଥଠାରେ ଅବସ୍ଥାନ କଲେ । ୧୩୮୪ ଖ୍ରୀଷ୍ଟାବ୍ଦରେ ତାଙ୍କର ପରଲୋକ ପର୍ଯ୍ୟନ୍ତ ସେ ସେଠାରେ ରହିଥିଲେ ।

ତାଙ୍କର ଅନୁଗାମୀମାନେ ସେ ସମୟରେ ସଂଖ୍ୟାରେ ଯଥେଷ୍ଟ ଥିଲେ । ସେ ପ୍ରଥମଥର ପାଇଁ ବାଇବେଲର ଅନୁବାଦ କରାଇଥିଲେ ।

ଲୋଲର୍ଡସ ମାନଙ୍କୁ ସେ ଶିଷ୍ୟ କରିପାରିଥିଲେ । ଲୋଲାର୍ଡସଙ୍କର ନେତୃତ୍ୱ ନେଇଥିଲେ ସାର ଜନ ଓଲଡ୍ କାଷ୍ଟଲ । ପ୍ରଥମେ ଓଲଡ୍‌ମଷ୍ଟଲଜଣେ ସୈନିକ ଥିଲେ ଏବଂ ୱେଲସ ଯୁବରାଜ ହେନେରୀଙ୍କର ବନ୍ଧୁ ରହିଥିଲେ । ସେ ୧୪୧୩ ଖ୍ରୀଷ୍ଟାବ୍ଦରେ ବନ୍ଦୀ ଅବସ୍ଥାରେ ତାଙ୍କର ପରଲୋକ ହୋଇଥିଲା ।

**ବଙ୍ଗଳା ଦେଶରେ ଶିଶୁ ମୃତ୍ୟୁହାର ବିଶ୍ୱରେ ସର୍ବାଧିକ**

ପ୍ରତିବର୍ଷ ବଙ୍ଗଳା ଦେଶରେ ୩୮ ଲକ୍ଷ ଶିଶୁ ଜନ୍ମ ଗ୍ରହଣ କରୁଥିବା ବେଳେ ମୃତ୍ୟୁ ସଂଖ୍ୟା ପ୍ରାୟ ୧୪ ଲକ୍ଷ । ଜନ୍ମ ଗ୍ରହଣର ୨୮ ଦିନ ମଧ୍ୟରେ ପ୍ରାୟ ଶତକଡା ୪୦ ଭାଗ ଶିଶୁ ମୃତ୍ୟୁ ମୁଖରେ ପଡ଼ଥାନ୍ତି ।

**ବଲ୍ଲଭପୁରର ହରିଣ ପାର୍କ**

ପଶ୍ଚିମ ବଙ୍ଗର ବୀରଭୂମ ଜିଲ୍ଲା ଶାନ୍ତିନିକେତନ ଉପକଣ୍ଠରେ ପ୍ରାୟ ୨୦୦ ହେକ୍ଟର ସଂରକ୍ଷିତ ଜଙ୍ଗଲକୁ ନେଇ ବଲ୍ଲଭପୁର ହରିଣ ପାର୍କ କରାଯାଇଛି । ୧୯୬୨ ମସିହାରେ ପ୍ରଥମେ ୪ଟି ଅଣ୍ଡିରା ଓ ୨ଟି ମାଈ କୃଷ୍ଣସାର ହରିଣ ଥିଲେ । ୧୯୬୮ରେ ଆଠୋଟି ଚିତ୍ରିୟା ହରିଣ ମିଶାଇବା ପରେ ସମ୍ପ୍ରତି ହରିଣ ସଂଖ୍ୟା ୧୫୦ରେ ପହଞ୍ଚିଛି । ୧୯୬୭ରୁ ୧୯୮୧ ମସିହା ମଧ୍ୟରେ ୧୩ଟି କୃଷ୍ଣସାର ଓ ୧୧ଟି ଚିତ୍ରିୟା ହରିଣ ଅନ୍ୟାନ୍ୟ ଅଭୟାରଣ୍ୟକୁ ସ୍ଥାନାନ୍ତରିତ କରାଯାଇଛି ।

**ଭାରତକୁ ବିକଳ୍ପ ନୋବେଲ ପୁରସ୍କାର**

ଚଳିତ ବର୍ଷରୁ ବିକଳ୍ପ ନୋବେଲ ପୁରସ୍କାର ଗାନ୍ଧିବାଦ ମାନବିକ ଅଧିକାର ସଙ୍ଗଠନ ଲୋକାୟନକୁ ପ୍ରଦାନ କରାଯାଇଛି ।

**ଆଜଟେକ୍‌ସଙ୍କର ଟିନୋଚଟିଟଲନ୍ ବର୍ଜ୍ୟ ସଭିଷ୍ଟା**

ଉତ୍ତର ଆମେରିକାରେ ଏକ ବିରାଟ ଗଷ୍ଠି ଥିଲା 'ଆଜଟେକ୍‌ସ' । ଲୋହିତ ଭାରତୀୟ ଉପଜାତି ପିମ୍ୟାନଙ୍କ ଭାଷା ସହ ସାମଞ୍ଜସ୍ୟ ରହିଥିଲା । ଏବେ ଏହାର ନାମକରଣ ଆରିଜୋନା କରାହୋଇଛି । ୧୧୦୦ ଖ୍ରୀଷ୍ଟାବ୍ଦରେ କେତେକ ଉପଜାତିର ବାସିନ୍ଦା ଦକ୍ଷିଣାଂଶକୁ ସ୍ଥାନାନ୍ତରିତ ହେଲେ । ସେମାନେ ଟୋଲଟେକ୍‌ସ ରାଜ୍ୟରେ ବସବାସ କରିବାକୁ ଲାଗିଲେ । ପ୍ରଥମେ ଭେଣ୍ଡଟ କିମ୍ବା କୃଷକ ଭାବରେ ସେମାନେ ଜୀବିକା ନିର୍ବାହ କଲେ ।

୧୩୨୨ ଖ୍ରୀଷ୍ଟାବ୍ଦରେ ସେମାନେ ଅଧୁନିକ ମେକ୍ସିକୋ ନଗରର ଟିନୋଚଟିଟଲନ୍ ନାମକ ଏକ ସନ୍ତସନ୍ତିଆ ଉପଦ୍ୱୀପରେ ବସବାସ ଆରମ୍ଭ କରିଥିଲେ । ପରେ ପରେ ଅଜଟେକ୍‌ସ'ଙ୍କର ସାମର୍ଥ୍ୟ ବୃଦ୍ଧି ପାଇଲା । ପଚାଶ ବର୍ଷ ମଧ୍ୟରେ ସେମାନେ ସବୁଙ୍କୁ ମନୋନୀତ କଲେ । ଇଜ୍‌କୋକୋଟଲ ୧୪୩୦ ଖ୍ରୀଷ୍ଟାବ୍ଦରେ ନିଜ ରାଜ୍ୟକୁ ବିରାଟ ସାମ୍ରାଜ୍ୟରେ ପରିଣତ କରାଇଥିଲେ । ୧୫୨୧ ଖ୍ରୀଷ୍ଟାବ୍ଦରେ କୋର୍ଟେସମାନେ ଅଜ-ଟେକ୍‌ସଙ୍କର ବିରାଟ ସାମ୍ରାଜ୍ୟକୁ ଦଖଲ କରିନେଇଥିଲେ ।

## ଶତବର୍ଷ ବ୍ୟାପି ଯୁଦ୍ଧର ଆରମ୍ଭ

ଇତିହାସ ପ୍ରସିଦ୍ଧ 'ଶତ ବର୍ଷ ବ୍ୟାପି ଯୁଦ୍ଧ' ୧୩୩୮ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା । ଏହି ଯୁଦ୍ଧ ଇଂଲଣ୍ଡ ଏବଂ ଫ୍ରାନସ ମଧ୍ୟରେ ହିଁ ହେଲା । ୧୪୫୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ଯୁଦ୍ଧର ଅବସାନ ଘଟିଲା ନାହିଁ ।

ଇଂଲଣ୍ଡର ରାଜାମାନେ ଦୁଇ ଶତାବ୍ଦୀ ଧରି ଏକ୍ୟୁଟାଇନର ବଂଶାନୁକ୍ରମିକ ଡ୍ୟୁକ୍ ହେଉଥିଲେ । ଫ୍ରାନସର ରାଜାଙ୍କୁ ସେମାନେ ଏଥିପାଇଁ ଅନୁରକ୍ତି ଦେଖାଉ-ଥିଲେ । ଫ୍ରାନସରେ ଫିଲିପ ୬ଷ୍ଠ କ୍ଷମତାସିକ୍ତ ହେଲାପରେ ଏଡ୍‌ୱାର୍ଡଙ୍କ ଫ୍ରାନସରେ ଅଂଶ ଛଡ଼ାଇ ନେଲେ । ଏହା ଫଳରେ ଯୁଦ୍ଧ ଆରମ୍ଭ ହୋଇଗଲା ।

୧୩୪୦ ଖ୍ରୀଷ୍ଟାବ୍ଦରେ ନୌଯୁଦ୍ଧର ସମ୍ମୁଖୀନ ହେବାକୁ ପଡ଼ିଲା । ୨୫୦ଟି ଇଂରେଜ ଜାହାଜ ସ୍ଲୁୟସ ନଦୀରେ ଫରାସୀ-ନୌବହରର ମୁକାବିଲା କରିବାରେ ଲାଗିଲା । ଦିନ ଅବସାନରେ କେବଳ ୨୪ଟି ଫରାସୀ ଜାହାଜ ରକ୍ଷା ପାଇପାରିଥିଲା ।

୧୩୪୬ ଖ୍ରୀଷ୍ଟାବ୍ଦର ଅଗଷ୍ଟ ୨୩ ତାରିଖରେ ଏଡ୍‌ୱାର୍ଡ ୩ୟ କ୍ରେସି ଯୁଦ୍ଧ କ୍ଷେତ୍ରରେ ବିଜୟ ହାସଲ କରିଥିଲେ । ଫରାସୀ ଅଶ୍ୱାରୋହୀ ଦଳ ଇଂଲଣ୍ଡର ଧନୁର୍ଦ୍ଧାରୀ ମାନଙ୍କୁ ଆକ୍ରମଣ କଲେ । ୨୦୦୦୦ ଫରାସୀ ସୈନ୍ୟ ବିଲୋପ ହେଲେ ଧନୁର୍ଦ୍ଧାରୀଙ୍କର ଧନୁଶରରେ । ଏଡ୍‌ୱାର୍ଡ ୧୩୭୬ ଖ୍ରୀଷ୍ଟାବ୍ଦରେ ସ୍ପେନରେ ପ୍ରାଣତ୍ୟାଗ କଲେ ।

**ଜାଣିଛ କି ?**

| | | |
|---|---|---|
| ଜୟପୁର | — | ଗୋଲାପୀ ସହର |
| ବାହାରିନ୍ | — | ମୁକ୍ତାଦୀପ |
| ପାମିର | — | ପୃଥିବୀର ଛାତ |
| ରୋମ | — | ସପ୍ତ ପର୍ବତର ଦେଶ |

| | | |
|---|---|---|
| ନରୱେ | — | ରବି ଏଫ (F)ର ଦେଶ |
| ପ୍ୟାରିସ | — | ବିଳାସମୟୀ ନଗରୀ |
| ଇଟାଲୀ | — | ଫଳର ଉପଦ୍ୱୀପ |
| ମେସୋପଟାମିଆ | — | ପୃଥିବୀର ଦୋଳନ |
| ଭେନିସ | — | ନିସ୍ତବ୍ଧ ନଗରୀ |
| ଆଇସଲ୍ୟାଣ୍ଡ | — | ତୁଷାର ଅଗ୍ନିର ଦେଶ |
| ବୁଲଗେରିଆ | — | ଗୋଲାପ ଫୁଲର ଦେଶ |

## ଚିକିତ୍ସା ବିଜ୍ଞାନରେ ନୋବେଲ ପୁରସ୍କାର

ଯୁକ୍ତରାଷ୍ଟ୍ର ଆମେରିକାର ମାଇକେଲ ଏସ. ବ୍ରାଉନ ଓ ଯୋସେଫ ଏଲ ଗୋଲଡ ଷ୍ଟେଇନଙ୍କୁ ୧୯୮୫ ମସିହାପାଇଁ ଚିକିତ୍ସା ଶାସ୍ତ୍ରରେ ମିଳିତଭାବରେ ନୋବେଲ ପୁରସ୍କାର ମିଳିବ ବୋଲି ଘୋଷଣା କରଯାଇଛି ।

## ବିଶ୍ୱର ବୃହତ୍ତମ ବିମାନ

ସୋଭିଏତ ୟୁନିୟନର ଜେଟ ଅଣ୍ଟୋନୋଭ-୧୨୪ ବିଶ୍ୱର ବୃହତ୍ତମ ବିମାନ ବୋଲି ଜଣାଯାଇଛି । ବିମାନରେ ଚାରୋଟି ଇଞ୍ଜିନ ରହିଛି । ଆକାଶରେ ଉଡ଼ବା ବେଳେ ନିଜ ଓଜନ ସମେତ ୪୦୫ ଟନର ଭାର ବହନ କରିପାରିବ । ଏହି ବିମାନରେ ଘଣ୍ଟାପ୍ରତି ଗତି ୮୪୦ କିଲୋମିଟର । ଏହା ଏକାଥରକେ ୧୬୫୦୦ କିଲୋମିଟର ପଥ ଯାଇପାରିବ ।

## ନିବୁଜ କୋଠରୀରେ ୫ ମାସ

ସୋଭିଏତ ଦେଶରେ ଦୁଇଜଣ ବୈଜ୍ଞାନିକ ଏକ ନିବୁଜ କୋଠରୀ ମଧ୍ୟରେ ୫ମାସ କଟାଇଥିବାର ପ୍ରକାଶ । ୩୦୦ କ୍ୟୁବିକ ମିଟର ପରିସୀମା ବିଶିଷ୍ଟ କୋଠରୀରେ ୫ମାସ କାଳ ବାହାରର କୌଣସି ଖାଦ୍ୟ ଓ ପାନୀୟ ଆଦି ଗ୍ରହଣ କରିନଥିଲେ । ମାତ୍ର କୃତ୍ରିମ ଗ୍ରୀନ ହାଉସର ଖାଦ୍ୟଶସ୍ୟ ଖାଇ ସେ ଜୀବନଧାରଣ କରିଥିଲେ ।

## ମାଛର ଜୀବାଶ୍ମ ଉଦ୍ଧାର

ତ୍ରିପୁରାର ଉତ୍ତରାଞ୍ଚଳରୁ କେତେକ ଭୂତତ୍ତ୍ୱବିତ ସଂପ୍ରତି ଜୀବାଶ୍ମ ପାଲଟିଯାଇଥିବା କେତେକ ବଡ ବଡ ମାଛର ଦାନ୍ତ ଉଦ୍ଧାର କରିଛନ୍ତି । ଭାରତୀୟ ଉପମହାଦେଶରେ ଏ ପ୍ରକାର ଅବିଷ୍କାର ସର୍ବପ୍ରଥମ ବୋଲି କୁହାଯାଉଛି । ଏହି ଦାନ୍ତସବୁ ୟପରସ ସିସେଟସ ଓ ସ୍କାର୍ଣ୍ଣୋ ଡୁଟୋ ହେଭେସିଆନସ ମାଛର ବୋଲି ଜଣାପଡ଼ିଛି ।

**ବୈଦେଶିକ ମୁଦ୍ରା ସଞ୍ଚୟ**

୧୯୮୩-୮୪ ଆର୍ଥିକ ବର୍ଷରେ ଭାରତର ବୈଦେଶିକ ମୁଦ୍ରା ସଞ୍ଚୟ ୭୧୩ କୋଟି ଟଙ୍କାକୁ ବୃଦ୍ଧି ପାଇଛି । ରିଜର୍ଭ ବ୍ୟାଙ୍କର ଏକ ଇସ୍ତାହାରରେ ଏହା ଜଣାପଡ଼ୁଛି ।

**ଚୀନର ବୃହତ ପାଚୀର ଭଗ୍ନ ପ୍ରାୟ**

ଚୀନର ବୃହତ ପ୍ରାଚୀରର ଶତକଡ଼ା ୮୪ ଭାଗ ଭଗ୍ନ ପ୍ରାୟ । ଏହାର ଦୈର୍ଘ୍ୟ ୬ ହଜାର କିଲୋମିଟର । ଉତ୍ତର ସୀମାନ୍ତ ପଟୁ ବିଦେଶୀ ଆକ୍ରମଣର ପ୍ରତିହତ କରିବା-ଲାଗି ରାଜାମାନେ ଏହା ନିର୍ମାଣ କରଇଥିଲେ ।

**କୃଷକ ବିଦ୍ରୋହ**

ଫିଜିଫଙ୍କର ଲୋଜର୍ଡମାନେ ଇଂରେଜ କୃଷକ ଓ ଶିଳ୍ପୀମାନଙ୍କର ଅସନ୍ତୋଷ ବୃଦ୍ଧି କରଇ ଦେଇଥିଲେ । ଭୂମି ସେମାନଙ୍କର ଉର୍ବର ଥିଲା । ଭୂମିଦାସମାନେ ଉପବାସରେ କଟାଇବାକୁ ବାଧ୍ୟ ହେଉଥିଲେ ସେହି ସମୟରେ । ଅଇନ ଦ୍ୱାରା ବେଠି ଖଟିବାକୁ ସେମାନଙ୍କୁ ସେ ସମୟରେ ବାଧ୍ୟ କରାଯାଉଥିଲା ।

୧୩୮୧ ଖ୍ରୀଷ୍ଟାବ୍ଦରେ ଅସନ୍ତୋଷ ପ୍ରବଳ ହେଲା ସରକାରଙ୍କ ପୋଲଟ୍ୟାକ୍ସ ଫଳରେ । ଏହା ଫରାସୀ ଯୁଦ୍ଧ ସକାଶେ ଉଦ୍ଦିଷ୍ଟ ଥିଲା ।

କେଣ୍ଟର ଓ୍ୱାଟ ଟ୍ୟାଲେର ଜଣେ ଖଜଣା ଆଦାୟକାରୀଙ୍କୁ ହତ୍ୟାକରି ସମସ୍ତଙ୍କୁ ଏକତ୍ରିତ କରଇଲେ । କୃଷକମାନଙ୍କୁ ଲଣ୍ଡନ ଅଭିମୁଖରେ ସେ ଅଗ୍ରସର କରଇଥିଲେ । ସେମାନେ ଅଫିସରମାନଙ୍କର ଗୃହ ଦାହ କଲେ ଏବଂ ସମ୍ଭ୍ରାନ୍ତମାନଙ୍କୁ ଅଟକ ରଖିବାରେ ଲାଗିଲେ । ଏହି ବିଦ୍ରୋହୀମାନେ ସିଥ ଫିଲଡରେ ପ୍ରବେଶକରି ଯୁବରାଜ ରିଚର୍ଡ ୨ୟଙ୍କୁ ଭେଟିଲେ ।

ରିଚର୍ଡ ବିଦ୍ରୋହୀମାନଙ୍କର ଦାବୀକୁ ମାନିନେଲେ ଏବଂ ସମସ୍ତେ ଏହାପରେ ବିକ୍ଷିପ୍ତ ହୋଇଗଲେ ।

**ଜିଓଫ୍ରେ ଚଉସରଙ୍କ ରଚନା**

'ଦି କାଣ୍ଟେରବରି ଟେଲସ୍'ର ରଚୟିତା ହେଉଛନ୍ତି ଇଂରେଜ କବି ଜିଓଫ୍ରେ ଚଉସର ଲଣ୍ଡନ । କାଣ୍ଟେରବରି ଯାତ୍ରା କରୁଥିବା ତିରିଶ ଜଣ ତୀର୍ଥ ଯାତ୍ରୀଙ୍କର ଗଳ୍ପ ଗୁଡ଼ିକ ଏଥିରେ ଲିପିବଦ୍ଧ କରହୋଇଛି । ଏହି ପୁସ୍ତକ ଖୁବ ଚିତ୍ତାକର୍ଷକ ।



R. N. I Regd. No. 4377 61 Regd. No. 0,78
CHHATRASATHI 23rd Yr. ( Monthly ) 11 th Month 1985

## ବହୁଦିନର ଅଭାବ ଦୂରହେଲା

ପିଲାଙ୍କୁ ଇଂରାଜୀ ପଢ଼ାଇବା ପାଇଁ ଏପର୍ଯ୍ୟନ୍ତ ଯେଉଁ ଅଭାବ ଅନୁଭୂତ ହେଉଥିଲା ତା ଦୂର ହୋଇଛି । ଶିକ୍ଷକଙ୍କ ବିନା ସାହାଯ୍ୟରେ ସହଜରେ ଇଂରାଜୀ ଲେଖାପଢ଼ା, ଉଚ୍ଚାରଣ ଏବଂ କଥାବାର୍ତ୍ତା କରିବା ଶିଖିଯାଇପାରିବ । କାରଣ ମାତୃଭାଷା ମାଧ୍ୟମରେ ଇଂରାଜୀ ପଢ଼ିବାର ବ୍ୟବସ୍ଥା My First Bookରେ ରଖାଯାଇଛି ।

A B C Dରୁ ଆରମ୍ଭ କରି ପ୍ରାୟ ଏକହଜାର ଅତ୍ୟାବଶ୍ୟକୀୟ ଶବ୍ଦ ଓ ସେଗୁଡ଼ିକର ବ୍ୟବହାର ଶିଖିବା ନିମନ୍ତେ ବହିରେ ସୁନ୍ଦର ରଙ୍ଗରେ ଛାପା ପ୍ରାୟ ୧୦୦୦ ଛବି ଦିଆଯାଇଛି ।

ବାସ୍ତବିକ୍ ମାତୃଭାଷା ଜରିଆରେ ଇଂରାଜୀ ଶିକ୍ଷା ନିମନ୍ତେ ସାରଦେଶରେ ଏପରି ଧରଣର ରଙ୍ଗିନ୍ ଛାପା ଓ ଛବି ଥାଇ ଖଣ୍ଡିଏ ହେଲେ ବହି ଏପର୍ଯ୍ୟନ୍ତ ପ୍ରକାଶ ପାଇପାରିନି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଭଲ ଶିକ୍ଷାବିତ୍‌ଙ୍କ ମତରେ "My First Book is the first of its kind."

ପ୍ରକୃତରେ ବହିଟିକୁ ଥରେ ଦେଖିଲେ ଆଉ ତାର ଉପାଦେୟତା ସହଜରେ ଅନୁଭୂତ ହୋଇପାରିବ ।

ଏକଦୁତ ଖାଉଛ...
ସେମାନେ ଅଫିସରମାନଙ୍କର ଗୃହ
ଲଗିଲେ । ଏହି ବିଦ୍ରୋହୀମାନେ...

# My ...t Book

By : N. K. Mohapatra

*Published by* : J. Mohapatra & Co.

Nimchauri, Cuttack-2 (Orissa)

ଓଡ଼ିଶାର ସମସ୍ତ ପୁସ୍ତକ ଦୋକାନ ଏବଂ ପତ୍ରପତ୍ରିକାର ଏଜେଣ୍ଟଙ୍କ ନିକଟରେ ଏ ବହି ମିଳିପାରିବ ।

ପ୍ରକାଶ ଥାଉକି ଏ ବହିରୁ ଅନ୍ୟୂନ ୧୦ଟି ଡାକଯୋଗେ ମଗାଇଲେ ପୋଷ୍ଟେଜ ଓ ପ୍ୟାକିଙ୍ଗ୍ ଛାଡ଼କରି ଦିଆଯିବ ।

Printed & Publieshed by B. Das on behalf of
M/s J. Mohapatra & Co. at the Grampanchayat Press
Kaligali, Cuttack-2